# MAHENDRA

by

Chintamani Mahanty.

# ମହେନ୍ଦ୍ର ।

ଶ୍ରୀ ଚିନ୍ତାମଣି ମହାନ୍ତି

ବିରଚିତ ।

ପ୍ରଥମ ମୁଦ୍ରଣ ।

5-5-11

PRINTED BY V. KAR.

THE UTKAL SAHITYA PRESS,

CUTTACK.

1918

ମୂଲ୍ୟ ୫ ୦

25 %

# ନିବେଦନ ।



ଉତ୍କଳର ସ୍ୱର୍ଣ୍ଣ ସ୍ୱର୍ଗ ପୁରାଣ-ପ୍ରଶସ୍ତ ମହେନ୍ଦ୍ର ଦର୍ଶନ ଇଚ୍ଛା ମୁଁ ବହୁଦିନରୁ ପୋଷଣ କରିଥିଲି । ମାତ୍ର ସୁବିଧା ଅଭାବରୁ ମୋର ସେ ଇଚ୍ଛା ସଫଳ ହୋଇ ପାରି ନ ଥିଲା । ପ୍ରସଙ୍ଗକ୍ରମେ ଥରେ ଏ ବିଷୟ ଦେଶପୂଜ୍ୟ ମଞ୍ଜୁଷାଧିପର ଶ୍ରୀଯୁକ୍ତ ଶ୍ରୀନିବାସ ରାଜମଣି ରାଜଦେବ ମହୋଦୟଙ୍କୁ ମୁଁ ପତ୍ରଦ୍ୱାରା ଜଣାଇଥିଲି । ରାଜା ମହୋଦୟ ବିଶେଷ ସହାନୁଭୂତି ପ୍ରକାଶପୂର୍ବକ ମୋତେ ଆହ୍ୱାନ କରିବାରୁ ମୁଁ ମଞ୍ଜୁଷା ଯାଇ ରାଜ-ଆତିଥ୍ୟ ଗ୍ରହଣ କଲି । ମୋ ଭଳି ସାମାନ୍ୟ ଲୋକ ପ୍ରତି ରାଜା ମହୋଦୟ ଯେରୂପ ଆଦର ଅଭ୍ୟର୍ଥନା ପ୍ରଦର୍ଶନ କରିଥିଲେ, ତାହା କେବଳ ତାଙ୍କ ତୁଲ୍ୟ ହୃଦୟବାନ୍ ନୃପତିଙ୍କର ଉପଯୁକ୍ତ । ତହିଁ ପରଦିନ ମୋର ମହେନ୍ଦ୍ର ଯିବାର ସୁବିଧା କରି ଦିଆଗଲା । ଦୁରାରୋହ ଗିରି, ପ୍ରତିପଦ ବିକ୍ଷେପରେ ବନ୍ୟପଶୁଦ୍ୱାରା ଆକ୍ରମଣ, ଏହା ବିବେଚନା କରି ରାଜା ମହୋଦୟ ମୋ ସଙ୍ଗରେ ପଥଦର୍ଶକ, ବାହକ, ପାଚକ, ବାଣୁଆ ପ୍ରଭୃତି ୩୦ ଜଣ ଲୋକ ପଠାଇଥିଲେ । ମହେନ୍ଦ୍ରଚୂଡ଼ାରେ ଦୁଇ ରାତି ଅବସ୍ଥାନ ପରେ ମୁଁ ଫେରି ଆସିଲି । ରାଜା ମହୋଦୟ ମହେନ୍ଦ୍ର ସମ୍ବନ୍ଧରେ ଗୋଟିଏ କାବ୍ୟ

ଲେଖିବାକୁ ଅନୁରୋଧ କଲେ ଏବଂ ପୁସ୍ତକ ମୁଦ୍ରଣର ବ୍ୟୟ ବହନରେ ସ୍ୱତଃ ସ୍ୱୀକୃତ ହେଲେ । ତାଙ୍କର ଆନୁକୂଲ୍ୟ ଲାଭ କର ନ ଥିଲେ ମହେନ୍ଦ୍ରର ମହାଦୃଶ୍ୟ ଦର୍ଶନ ମୋ ଭାଗ୍ୟରେ ଘଟି ନ ଥାନ୍ତା ଏବଂ ମୋ ଜୀବନର ଗୋଟିଏ ପ୍ରଧାନ ଆକାଂକ୍ଷା ଅପୂର୍ଣ୍ଣ ରହି ଯାଇଥାନ୍ତା । ଏହି ମହୋପକାର ସକାଶ ରାଜା ମହୋଦୟଙ୍କ ନିକଟରେ ମୁଁ ଚିରଋଣୀ ।

ମହେନ୍ଦ୍ର ଅବସ୍ଥାନ କାଳରେ ସ୍ଥାନୀୟ ସେକେଣ୍ଡରୀ ସ୍କୁଲର ହେଡ୍ ପଣ୍ଡିତ ଶ୍ରୀଯୁକ୍ତ ଶ୍ୟାମସୁନ୍ଦର କାବ୍ୟତୀର୍ଥ ଏବଂ ସହକାରୀ ଶିକ୍ଷକ ଶ୍ରୀଯୁକ୍ତ ଗୋବିନ୍ଦଚନ୍ଦ୍ର ମହାନ୍ତି ମୋ ପ୍ରତି ଯଥେଷ୍ଟ ଅନୁଗ୍ରହ ପ୍ରଦର୍ଶନ କରିଥିଲେ । କୌଣସି ଅଭାବ ନ ଥିଲେ ସୁଦ୍ଧା ମୋର ଅଭାବ ଅସୁବିଧାର ତତ୍ତ୍ୱ ସେମାନେ ବାରମ୍ବାର ଗ୍ରହଣ କରୁଥିଲେ । ବିଶେଷତଃ ଗୋବିନ୍ଦ ବାବୁ ମୋ ସଙ୍ଗରେ ମହେନ୍ଦ୍ରକୁ ଯାଇ ମୋତେ ଅନେକ ଦ୍ରଷ୍ଟବ୍ୟ ସ୍ଥାନ ଦେଖାଇଥିଲେ । ସେ ଉଭୟଙ୍କ ନିକଟରେ ମୁଁ ଚିରକୃତଜ୍ଞ ।

ଭଦ୍ରକ ।<br>୭।୬।୧୯୫୮ } ଶ୍ରୀ ଚିନ୍ତାମଣି ମହାନ୍ତି ।

# ମହେନ୍ଦ୍ର ।

## ପ୍ରଥମ ସର୍ଗ ।

ସ୍ୱର୍ଗ୍ୟଦେବି, କଲ ଯେବେ ଧନ୍ୟବାନ ମୋତେ
କୃତାର୍ଥ ପବନ, ଯାର ମହା ଶୋକ-ଗର୍ଭେ
କରୁଥିଲି ସନ୍ତରଣ ଏତେ ଦିନଯାଏଁ
ପ୍ରାଣଦଗ୍ଧ ଅନ୍ତରରେ କଳ୍ପନା ବଳରେ,
ଚିହ୍ନିଲେ ନଗରର ସେହି ଗିରିବର
ମହେନ୍ଦ୍ର-ଚାହିଁତ-ଗିରି ମହେନ୍ଦ୍ର, ସହିତେ
ଦେଖାଇ ତୁଚ୍ଛପ୍ରାୟେ, ପୁଣ୍ୟ-ପ୍ରସ୍ରବଣ-ପ୍ଲାବିତ ।
ବନ୍ଧୁ ଦନ୍ ଭକ୍ତ ତୋର ଆଶା-ହିଁ ହନ୍ତାରେ
କରୁଥିଲି ତୁମ୍ଭ ପଦେ ଅଳି ସମାଲୁଲେ,
ମାଗ ତୁମ୍ଭେ ଯିବ ଦେବି, ଏକାନ୍ତ ବଧିର
ମୋର ଯେ ପ୍ରାର୍ଥନା ପ୍ରତି, ଅବୋଧ ତୁମ୍ଭର,
ସ୍ମୃତିର ସଞ୍ଜୀବନୀ ମାଗିବା ମାତ୍ରକେ

## ମହେନ୍ଦ ।

କବେ ଏ ଭାରତ ତାର ପ୍ରାର୍ଥନା ପୂରଣ ?
ଯଥାକାଳେ ଏ ଯାଚକେ ପ୍ରଦାନ ପ୍ରସାଦ
ଦେଖାଇଲ ଆଜ ଅହା ସାଫଲ୍ୟ-ମନ୍ଦର ।
ଏ ଦ୍ରବ୍ୟେ ପୂଜକ ପାଦ ଧାନସ୍ଥାନ ମୂର୍ତ୍ତି,
ଅର୍ପିଅଛୁ ଯେ ଆନନ୍ଦ, ଦବ୍ୟ, ଅନବଦ୍ୟ
ଘେନ ସେ ଆନନ୍ଦେ ତୁମ୍ଭେ ପୂଜାଦ୍ରବ୍ୟରୂପେ ।

ପ୍ରଣମେ ମହେନ୍ଦ୍ର ଗିରି, ଅକିଞ୍ଚନ ଜନ
ପୁଣ୍ୟ ଦେବପାଦେ ତବ ଅଷ୍ଟାଙ୍ଗ ଲୁଟାଇ,
ଅପିଛୁ ଦର୍ଶନ ଆଶେ, ମାତ୍ର ଅସି ନାହିଁ
ବର୍ଣ୍ଣନ ମାନସେ—ତବ ମାହାତ୍ମ୍ୟ ମହାନ,
ବ୍ୟର୍ଥ ଦୁରାକାଂକ୍ଷା-ସ୍ୱପ୍ନ ବ୍ୟଙ୍ଗ ପ୍ରେରଣାରେ ।
ବର୍ଣ୍ଣିଛନ୍ତି ଯେ ମାହାତ୍ମ୍ୟ କବୀନ୍ଦ୍ର-ବନ୍ଦିତ
କାଳିଦାସ, ସାରସ୍ୱତ-ସାମ୍ରାଜ୍ୟ-ସମ୍ରାଟ
ସଂସ୍କୃତ-ସାହିତ୍ୟ-ସୌଧ-ସ୍ଥପତିପ୍ରବର,
(ଅମର ରସନା ଯାଙ୍କ ନିଷିକ୍ତ ଅମୃତେ,
କଳ୍ପନା-ଭଲ୍ଲୁସ୍ଥାଠୀର ଅଜୀବନ ଶିଷ୍ୟ)
କହିବାକୁ ସେ ମହିମା ନାହିଁ ମୋ ଯୋଗ୍ୟତା,
କାହିଁ ସେ ଅନନ୍ତ ସିନ୍ଧୁ, କାହିଁ ମୁଁ ଗୋଷ୍ପଦ ?
କାହିଁ ସେ ପ୍ରଭବ, ଯାହା ଅତ୍ର ଯଷ୍ଟିକଳ,

## ପ୍ରଥମ ସର୍ଗ ।

କାହିଁ ମୁଁ ଅସାର ହେୟ ବାଳୁକା-କଣିକା !
ତଥାପି କହିବ ଯଦ ଏଣୁ ତେଣୁ କଣ୍ଠ
ଅମଳୀ ପ୍ରଳାପ ବଳ; ତୋ ଶୋଭା-ମଦସ୍ୱ—
ନଶାଷ୍ଟେଳେ, ହେଲେହେଁ ତା ଅର୍ଥହୀନ ଭାଷା,
ଶୁଣିବେ ବୋଦ୍ଧବେ—କାବ୍ୟରସ-ସୁଧାପାୟୀ,
ମଧୁର ରସାଳ ଫଳଭୋଜୀ ଶୁକପକ୍ଷୀ
ଭୁଞ୍ଜେ ସ୍ୱେଚ୍ଛା ଗୁଳ୍ମକଣ ଆସ୍ୱାଦବିହୀନ,
କେବଳ ଏ ରସେ ଅଳି ସୁରଭି ସ୍ୱମନେ,
ଅଘ୍ରାଣେ ତ ଲୁବ୍ଧବକେ—ରୂପଗନ୍ଧହୀନ,
ନୁହେ ଖାଲି ଧୂପ ଦୀପ ଚନ୍ଦନ ତୁଳସୀ
ଦେବପୂଜା ଉପାଦାନ, ଅତି କ୍ଷୁଦ୍ରତମ
ତୁଚ୍ଛ ଦୂର୍ବାଦଳ ସୁଦ୍ଧା ଲଭେ ସେ ସୌଭାଗ୍ୟ ।

ଅହୋ ଏ ବସ୍ୱଟ ଗିର, ରୁଦ୍ର ଗୁରୁକାନ୍ତ,
ଚାହିଁଲେ ନୟନ ହୁଏ ନିଷ୍ପନ୍ଦ ଅବଶ,
ଶୃଙ୍ଗ ପରେ ଶୃଙ୍ଗ ପୁଣି ଶୃଙ୍ଗ ଅନୁପର,
ଶୃଙ୍ଗେ ଶୃଙ୍ଗେ ସୂକ୍ଷ୍ମା ହୋଇ ଯାଉଛି ପ୍ରକାରେ
ଯାଉଛି ଆକାଶେ ମିଶି, ମିଶାଇ ନୀଳିମା
ଅନନ୍ତ ନୀଳିମାମୟ ମହାକାଶ ସହ ।
କେତେ କାନ୍ତ ସୁନ୍ଦର ଏ ଅମରଯୋଗୀ

ମହେନ୍ଦ୍ର ।

ଜଗତର ଭକ୍ତି ପ୍ରୀତି ଶ୍ରଦ୍ଧା ମାନବେ
ସମାଧିସ୍ଥ, ସୁଗମ୍ଭୀର ନୀରବ ମୂର୍ତ୍ତିରେ,
କେ କହିବ ତାହା, ସେହି କାଳ ଜାଣେ ଅନ ।
ସ୍ରଷ୍ଟା ବିନା ସୃଜନର ପ୍ରମାଣ ପ୍ରଦର୍ଶି ।
ସମ୍ମୁଖେ ଅନାଦିତୀର (୧), ଯଥା ଗ୍ରନ୍ଥାଗାର,
ବକ୍ଷ ଦେଶେ ଦାରୁବ୍ରହ୍ମ (୨) —ପୁଣ୍ୟକମଣ୍ଡଳୁ ।
ଦେଖିଥିଲି ଦୂରୁ ଯାହୁ ନୀଳନଭଃ କୋଳେ
ସ୍ୱପ୍ନ ସନ୍ନିଭାସ୍ୟ, ଏବେ ସେ ଦିଶିଲୁ ଯଥା
ଉତ୍କଳ-କମଳାଙ୍କର ମର୍କତ ମସ୍ତକ,
ଶିଖଦଣ୍ଡ, ଗୌରବର ଯୋଗ୍ୟ ପୁରସ୍କାର,—
ଅର୍ଦ୍ଧ, ଦେବ ମହିମାର ମଧୁର-ମୟୂଖେ ।
ବରିଷ୍ଠ ଅଧ୍ୟାତ୍ମ ଗିରି ବସ ଉଭଦାପେ ।
କିମ୍ବା ଏ ଦିଗନ୍ତବ୍ୟାପୀ ଅକ୍ଷୟ ଭଣ୍ଡାର
ସ୍ୱରଗ ଉଦ୍ଧବଙ୍କର, ମଣିମୁକ୍ତାସରୀ
ଜାଗତ୍ ଶବରସୂର୍ତ୍ତ ଅଥବା ଏ ଶୈଳ
ସାରସ୍ୱତ ପାଠାଗାର, କିମ୍ବା ସୁନ୍ଦରର
ନିର୍ଜନ ପବିତ୍ରତମ ଉପାସନାଗାର ।
ନିରୂପମ ତୁ ମହେନ୍ଦ୍ର, ଯୋଗିରେ ଉପମା ।

(୧) ମଞ୍ଜୁଷାର ସ୍ନାନପ୍ରସିଦ୍ଧ ଶୈଳ ।
(୨) ମହେନ୍ଦ୍ରର ସର୍ବୋଚ୍ଚ ଶାର୍ଦ୍ଦୂଳୀ ଶିଖର ।

## ପ୍ରଥମ ସର୍ଗ ।

ବସ୍ତୁରୁ ଯେ ଉପମାର ଅଳଙ୍କାର ହୋଇ,
ଭାରତ-ମହାକାବ୍ୟର ଟୀକା ଏ ଉଜ୍ଜ୍ୱଳ,
ତୁହ ସେ ଟୀକାର ଭବ—ସରଳ ସୁନ୍ଦର ।
ହୁରୁ ଯା ଅଙ୍ଗୁଷ୍ଠଲି ଛବ ଅଙ୍କା ପର
ଧନୁକ ଦେଇଲ ଉଷ୍ଟ୍ରୀ ବବଧାଲୁଙ୍କର,
ହେଲୁ ତାହା ପଦଣର ଅଭ୍ୟଙ୍କଷରୂଢ଼େ,
ତୃଣ ହେଇ ମହାତରୁ, ରେଖା ହେଇ ନଦୀ,
ବସନ୍ତି ବାମନ ରୂପ ଧରିଲେ ସକଳେ
ସ୍ୱାଭାବିକ ନିଜ ରୂପ ଲୁଚୁଥାଏ ପ୍ରାୟ ।
ଅଭ୍ରଭ ସ୍ୱର୍ଗ-ଭବ ତୁହ ରେ ମହେନ୍ଦ୍ର,
କୋଟି ମୁଖେ କୋଟି ଛନ୍ଦେ ଗାଉ ଯେ ସଙ୍ଗୀତ,
ତାର ମହାଭାଷା କମେ ଧର ଅସି ଦେହ
ନାଚ ଖେଳ ବୁଲେ ସଦା ନୟନ ଅଗ୍ରତେ,
କେ ବୁଝିବ ସେହ ବର୍ମ ନିମନ୍ତ୍ରଣ ବାଣୀ,
ନ ହେଲେ ରେ ଗିରିବର ତୋ ଭାବେ ତନ୍ମୟ,
ତୋ ପର ସହସ୍ର ଶାନ୍ତ ଅସୀମ ଧୈର୍ଯ୍ୟାଙ୍କୁ;
କେତେ ଲତ ଗୀତ, କେତେ ଗାଉ, କେତେ ଶୁଣୁ;
ହେଲ କେତେ ତହିଁ ସୁପ୍ତ, ଜୋଳକ ସମାନ ।
ରଚକ, ଗାୟକ, ଶ୍ରୋତା ତୁହ ଏକାଧାରେ ।

## ମହେନ୍ଦ୍ର ।

ନଗବ୍ରଜ, ତୁ ବରିଷ୍ଠ, ବରିଷ୍ଠ ଯେମତ
ତୋର, ଧର୍ମକ୍ଷେତ୍ର ପୁଣି ଅଟଇ ବରିଷ୍ଠ,
ସେହୁ ବରିଷ୍ଠତା ପୋଡ଼ିଦଏ ଯୁଗପତ
ମାନବର—କ୍ଷୁଦ୍ରାଦପି ଅତି କ୍ଷୁଦ୍ରତର
ମାନବର, ଅଭିମାନ ଅହଂବଡ଼ିମାତ୍ର,
ପୋଡ଼ିଦଏ ଯଥା ଦାବାନଳ ତୋ ଶରୀରୁ
ଆବର୍ଜନାରାଶି, ହେଉ ନିର୍ମଳ ତୁ ତହିଁ ।

ତୋ ମହିମା—ଅତଳତ ଅଗାଧ ବାରିଧି,
ବସୁରେଣୁ—ମାନବର ବୁଦ୍ଧି ଅନୁମିତା
ନ ପାଇ ଅନ୍ତସ୍ଥ ଘଟେ ଭ୍ରମ ମନେ ତହିଁ ।
ମହା ସ୍ୱାର୍ଥପର ତୁହି, ମାତ୍ର ସ୍ୱାର୍ଥ ତୋର
କେବଳ ପରାର୍ଥ ପାଇଁ, ଧରିଛୁ ଜୀବନେ
ଜଗତର ସେବାବ୍ରତ, ଅଣଳିପ୍ସାପିତ,

ଦାନପଟୁ ହସ୍ତ ତୋର ସଦା ଦାନେ ରତ,
ଜନଙ୍କେ ଦରଦ ମାତ୍ର ଯଥାର୍ଥ ଏ ଜ୍ଞାନ
ନ ଗଣନ୍ତି ମହାଜନେ ଉପକାର-ମୂଲ୍ୟ
ପ୍ରତି ଉପକାର, ନୁହେ ତାଙ୍କର ତା ଧର୍ମ ।
ଆଧାର ତୁହି ରେ ଦିବ୍ୟ ଅନନ୍ତ ଜ୍ଞାନର,
ଅନନ୍ତ ପ୍ରେମର, ଯହିଁ ଏକ ନେତ୍ର ତୋର
ସ୍ନେହାଶ୍ରୁ, ଅପର ନେତ୍ର ପ୍ରେମାଶ୍ରୁ ପାବନ,

## ପ୍ରଥମ ସର୍ଗ ।

ସେହି ଅଶ୍ରୁଧାର ବେନି ତରଙ୍ଗିଣୀରୂପେ
ପ୍ରବାହିତ—ସ୍ୱର୍ଣ୍ଣମୁଦ୍ରା, ମହେନ୍ଦ୍ରତନୟା । (୧)
କଠୋର ତୁ ସତ୍ୟ, ଯେଣୁ ପାଷାଣ ଶରୀର,
ମାତ୍ର ସେହି କଠୋରତା ଅନ୍ତରାଳେ ନିତ୍ୟେ
ଅନନ୍ତ କରୁଣାଧାରା ଅଛି ଲୁକ୍କାୟିତ ;
ନାରିକେଳ ଆବରଣ ହେଲେହେଁ କଠିନ
ଅନ୍ତର କୋମଳ ସ୍ନିଗ୍ଧ ସରସ ମଧୁର ।
ଧରୁ ମନସ୍ୱେର ମୂର୍ତ୍ତି, ଦୃଷ୍ଟିପାତ ମାତ୍ରେ
ହର ନେତ୍ର ଆଜୀବନ-ସଞ୍ଚିତ ରକତ
ହୃଦୟଁ ହୃଦୟ ସହ, ହର ନଂଏ ଯଥା
ନିଦାଘ ଅମ୍ବୁଦ ସହ ଅମ୍ବୁ ସରୋବରୁ ।
ଗିରିମଣି, ତନୁ ତୋର ସ୍ତୂପରେ ଗଠିତ,
ଗୋଟିଏ ଅଣୁରେ ତୋର ଗୁପ୍ତ କୋଟି କୋଟି
ପ୍ରସ୍ରୁତ—ପୁଣ୍ୟମୟୀ, ଗୌରବଗ୍ରସ୍ତ,
ବେଦନା-ଗୋପନ-ଗୀତ ହର ସେ ହୃଦୟଁ
ନୈରାଶ୍ୟର ହା ହା ଧ୍ୱନି ସହି, ଆଣି ଦଏ
ଅଳସ ଅବଶ ସୁପ୍ତ ବିଶୁଷ୍କ ଜୀବନେ
ନବୀନ ଚେତନ, ନବ ବଳ, ନବ ଆଶା;

---

ସ୍ୱର୍ଣ୍ଣମୁଦ୍ରା ଏବଂ ମହେନ୍ଦ୍ରତନୟା ନଦୀଦ୍ୱୟ ମହେନ୍ଦ୍ର ପର୍ବତରୁ ଜାତ ।

## ମହେନ୍ଦ୍ର ।

ଅତୀତ ଜାତୀୟ ଯୁଦ୍ଧେ—ମହିମାମଣ୍ଡିତ,
କର ଏବେ ସମ୍ପୂର୍ଣ୍ଣଶୀଳ ସେ ଅମର ସ୍ମୃତି ।
ଦେଖାଅ ସରଣୀ ଏବେ ହେ ନଗାଧିରାଜ,
ଖେଳବ ତୋ କୋଳେ, ପିତୃକୋଳେ ଶିଶୁପ୍ରାୟ,
ତୋ ସନ୍ତତିଗଣ ସବୁ, ପୂରଅ ବାସନା ।



# ଦ୍ୱିତୀୟ ସର୍ଗ ।

ଧନ୍ୟ ଯାବା (୧), ତୋ ତପସ୍ୟା, ଶୋଭି-ଅଲ୍ପମନ୍ତ୍ରୀ
ଜ୍ୱରଗର୍ଭ, ମହେନ୍ଦ୍ରର ପାଦମୂଳେ ବସି,
ଦେବପାଦ ମୂଳେ ଯଥା କୁସୁମସ୍ତବକ,
ଲଭିଛୁ ତୁ ଗର୍ବପକ୍ଷୀ ସୌଭାଗ୍ୟ-ଦୁର୍ଲଭ ।
ପଥିକ-ବାନ୍ଧବୀ ତୁହି, ପଥିକସେବିକା,
ମହେନ୍ଦ୍ର-ବୈକୁଣ୍ଠ-ଯାତ୍ରି-ଗମନପଥରେ,
ସେବେ ତୋତେ ଗିରିବାୟୁ ବହି ଅଣି ସଦା
ଗିରି-ପୁଷ୍ପ-ସଙ୍କର୍ଷିତ ସୁରଭି-ପ୍ରଶ୍ୱାସ,
ଗିରିପୃଷ୍ଠେ ଉଜ୍ଜ୍ୱଳ ତୁ, ତରୁ ପୁଷ୍ପହାସୀ,
ଉଜ୍ଜ୍ୱଳ ପାଣ୍ଡିତ୍ୟ ଯଥା ବିନୟବାଣୀରେ ।
ବାନ୍ଧ ବନ୍ଧ ଲତା-ପାଶେ ପାନ୍ଥ ନେତ୍ର ପାଦ,
ପୁଷ୍ପ-ପାଶେ ନେତ୍ରଦ୍ୱୟ, ହୁଏ ସେ ଅଚଳ,
ବୋଲି ଦେଉ ନୟନେ ତୁ ଅଗ୍ରହ-ଅଞ୍ଜନ,
ତଥା ମନେ ଉତ୍କଣ୍ଠାର ଅମୃତ ପ୍ରଲେପ ।

---

(୧) ସ୍ଥାନବିଶେଷ । ଏହି ସ୍ଥାନଟି ବ୍ରହ୍ମପୁର ମାଇଲ ଅନ୍ତ ଦୋରଦାଣ । ଏଠାର ସ୍ଥାନୀୟ ତଳବାସୁ ଅସ୍ୱାସ୍ଥ୍ୟକର । ସ୍ଥାନଟି ଦୃଶ୍ୟବହୁଳ ।

ଗିରିଦୁର୍ଗ, ଜହ୍ନାରୂଢ଼ ପଶ୍ଚରେ ଭ୍ରମର,
ଦୃଷ୍ଟ ଦେଶ, ପଥେ ସାଙ୍ଗ, ପ୍ରଦାନ ଅଭୟ ।
ବୈଦିକ ପଥରେ କଲ୍ଲ ଗିରି ଆରୋହଣ
ବଲୁଲିତ ଦୋଳାଯାନେ (୧) ଉଦ୍ଧତ ବାହନେ.
ସେ ପଥ ଗୋମୂତ୍ର ଛନ୍ଦେ ହୋଇ ବିରଚିତ
ମିଶିଛି ଊର୍ଦ୍ଧ୍ୱରୁ ଉଠି ସର୍ବୋଚ୍ଚ ଶିଖରେ ।
ଗିରିସ୍ତନଶିଙ୍କ ପଦେ ଅଳତା ପରାୟେ
ଶୋଭେ ତାହା ନିମ୍ନଭାଗେ, ମଧ୍ୟଭାଗେ ଯଥା
ପ୍ରବାଳର ସପ୍ତସରୀ ମଞ୍ଜୁଳ ମେଖଳା,
ଊର୍ଦ୍ଧ୍ୱେ ଉଦେ ଗିରିବର ବକ୍ଷ ବିଲମ୍ବିତ
ଆରକ୍ତ ମନ୍ଦାରମାଳା ପରାୟେ ସୁନ୍ଦର,
ଅଥବା ଜଳଦ ନୀଳ ଘନେ ରଙ୍ଗ ଇନ୍ଦ୍ର୍ୟ,
ନଭୂବା ସାଗରେ ଭାସେ ପ୍ରବାଳଲତିକା ।
ନିର୍ମିତ ସେ ପନ୍ଥ ଅତି ଅଦ୍ଭୁତ କୌଶଳେ,
କରିଛି ସେ ଦୁର୍ଭେଦ୍ୟ ପର୍ବତେ ସୁଗମ୍ୟ,
ନିର୍ମାତା ତାହାର ଧନ୍ୟ, ଧନ୍ୟ ତା ପ୍ରତିଭା, (୨)

---

(୧) ଏହା ଏକ ପ୍ରକାର ଭାଡ଼ାଟିଆ ଯାନ । ଏହାକୁ ଦେଶୀୟ ଆସାମୀ ବୈଠ ବୋଲିଯାଇ ପାରେ । ଏହାକୁ ଶେରପାମାନେ ବହନ କରନ୍ତି ।

(୨) ମଣ୍ଡ୍ରୋଗ୍ରବର୍ଣ୍ଣର ସାବାସାମୁଦ୍ରବାସୀ ଶ୍ରୀଯୁକ୍ତ ଦଶୋର ସୂତ୍ର ଦକ୍ଷତାର ଅଦ୍ଭୁତ ଆବିଷ୍କାରରେ ଏହି ପଥ ନିର୍ମାଣ କରିଅଛନ୍ତି । ଏହି ପଥରେ ଗାଡ଼ି,

ଅଶିକ୍ଷିତ ସ୍ଥପତିର ଏ ପ୍ରତିଭା ଦେଖି
ନ ହେବ ଚକିତ କେଉଁ ପ୍ରବୀଣ ସ୍ଥପତି,
ଅଶିକ୍ଷିତ ହୃଦୟର ଏଭଳି କଳ୍ପନା
ସୁଶିକ୍ଷିତ କଳ୍ପନାରୁ ବଳେ ବହୁଗୁଣେ,
ବଳଯାଏ ଯିନା ବନ ଫୁଲର ସୌରଭ
ଉଦ୍ୟାନ ଫୁଲରୁ, ହେଉ ପଛେ ଅନାଦୃତ ।
ନୁହେ ଅନୁର୍ବର କେବେଁ ଉତ୍କଳୀୟ ମଥା,
କେବଳ ସେ ଉପଯୁକ୍ତ କର୍ଷଣ ଅଭାବେ
ହେଉ ନାହିଁ ଫଳପ୍ରଦ, ଆଶା ଅନୁରୂପ ।
ମା ଉତ୍କଳ, କେଉଁ ଗୁଣେ ଊଣା ତୋ ସନ୍ତାନେ,
ପୁଣି ଅଛୁ ଅବା କେଉଁ ବିଦ୍ୟାରେ, କଳାରେ,
କେତେ ଠାବେ କେତେ ରତ୍ନ—ମହାର୍ଘ ଉଜ୍ଜ୍ୱଳ,
ରହିଛୁ ସମ୍ପଦ ଗର୍ଭେ, କେ ଚାହୁଁଛି ତାହା,
ଏହା ଭାଗ୍ୟଦୋଷ, କାହା ଦେବ ଅଭିଶାପ ?
ହେଉ ପଛେ କଣ୍ଟକିତ ବନ୍ଧୁର ସେ ପଥ
କର୍କଶ-ପିଚ୍ଛିଳ, ମାତ୍ର ନୁହେ କ୍ଲାନ୍ତିକର,

---

ସୋଢ଼ା, ଘନ ଜଳ ପଥର ଏବଂ ଧାତୁରେ ଅନ୍ୱେଷଣରେ ଗମନାଗମନ କରି ପାରନ୍ତି । ମହେନ୍ଦ୍ରର ପାଦଦେଶରୁ ଉପରପର୍ଯ୍ୟନ୍ତ ୧୦ ମାଇଲ ମଧ୍ୟରେ ୭୦ ଗୋଟି ଖାଲଛ ଅଛି । ଏହି ପଥ ନିର୍ମାଣରେ ୫୮୦୦୦ ଟଙ୍କା ବ୍ୟୟିତ ହୋଇଥିବାର ପ୍ରକାଶ । ଉକ୍ତ ପଥ ନିର୍ମାଣ ପ୍ରକାଶ କରୁଣାର ଗଭର୍ଣ୍ଣମେଣ୍ଟରୁ ଶତ ପୁରସ୍କାର ପାଇଥିଲେ ।

ପ୍ରତ୍ୟକ୍ଷ ସେ କ୍ଳାନ୍ତିହର ଶାନ୍ତିର ଆଧାର ।
ଦେଖ ପାଶେ ମହାରଣ୍ୟ—ଚାଣ୍ଡ୍ରର ଅଗମ୍ୟ,
ବସିଛି ବିସ୍ତାରି ତହିଁ ପ୍ରକୃତି ସୁନ୍ଦରୀ
ଏ ଅନନ୍ତ ଉଚ୍ଛୃଙ୍ଖଳ ବିଶୃଙ୍ଖଳ ଶୋଭା,
କ ଦେଖିବ ନର ତହୁଁ—ଦ୍ୱିନେତ୍ର, ସ୍ୱଳ୍ପାୟୁ,
କଳ୍ପନା ଯଦ୍ୟପି କେତ୍ର ବେଗ ପାର୍ଶ୍ୱ ଅନ୍ତୁ
ସୃଷ୍ଟି ଶେଷ ଦନଯାଏଁ, ବହ୍ନ ବହୁ ନେତ୍ର,
ସେ ଅଦ୍ଭୁତ ଶ୍ଳାଘ୍ୟଧର ଦେଖନ୍ତା କିଞ୍ଚିତ,
ହୋଇଥିଲେ ଶୋଭାଦାସ, ଶୋଭାର କାଙ୍ଗାଳୀ ।
ତୃଷ୍ଣିମାନେ ଇଚ୍ଛା ହୁଏ ସେ ଶୋଭା-ସାଗରେ
ପିଇବାକୁ ଏକାଢୋକେ ଅଗସ୍ତ୍ୟ ସଦୃଶେ,
କେବଳ ସେ ଇଚ୍ଛା ହୁଏ ଇଚ୍ଛାରେହିଁ ପୂର୍ଣ୍ଣ,
ନ ଦେଖେ କାର୍ଯ୍ୟର ମୁଖ ସ୍ୱପ୍ନେ କେଉଁକାଳେ ।

ନାଚ ନାଚ ସ୍ୱର୍ଣ୍ଣମୁଦ୍ରା (୧) କର ଜଳ ହାସ୍ୟ
ପ୍ରଦର୍ଶାଇ କରତାଳି ଜୀବନ୍ତ ଅଳକ
ଅସ୍ପଷ୍ଟ ଓହ୍ଲାଇ ନମ୍ରେ ଅଶାନ୍ତ ଉଦ୍‌ବେଗେ,
ମୁଖେ କାହିଁ କଳକଳ ଶବ୍ଦ, କାହିଁ ଧୁଧୂ,
କାହିଁ ଅତି କ୍ଷୁଦ୍ର, ଅହା, ପୁଣେ ହୁଏ ଯଥା

(୧) ପ୍ରପାତର ନାମ ସୁନାମୁଖୀ ଜଳ ।

## ଦ୍ୱିତୀୟ ସର୍ଗ ।

ଉଠୁଛି ଏକଇ ତାରୁ ସା ଋ ଗା ମା ସ୍ୱର ।
ନୁହେ ସେ ଅଳସ କମ୍ୱା ଅକର୍ମସର୍ବସ୍ୱ,
କାର୍ଯ୍ୟବ୍ୟାପୃତ ସଦା, ମାନସ ଯେସନ ।
ଠାବେ ଠାବେ ହୋଇ ସ୍ରୋତ ଶିଳାପ୍ରତିହତ
ପଡ଼ୁଛି ତଳକୁ ଜେଉଁ ଘୋର ଗଳଗାଜ (୧)
ଡାଳ ଦେଇ ବେନ ତଟେ ଫେନ-ପୁଷ୍ପାଞ୍ଜଳି,
ନଭ୍ରାଗର୍ଭ ସୁଗାଣିତ ସ୍ଫଟିକର ସ୍ତମ୍ଭ
ଛେଦ ହୋଇ ପାଷାଣେ କା ଦେଉଛି ବାଷ୍ପୁଡ଼
ମୁକ୍ତାସ୍ତମ୍ଭ ରଚ୍ଛପାଶେ, ଜଳକଣ ବ୍ୟାଜେ ।
ବହୁଛି ପ୍ରବଳେ ସ୍ରୋତ, ଫୁଟି ଉଠି ତହିଁ
ପ୍ରବାହ କୁସୁମ ପ୍ରାୟ ଅସଂଖ୍ୟ ଭଙ୍ଗୀ
ଫେନଜାଲ, କ୍ଷଣେ ଦୂର ଭାସି ଯାଇ ସ୍ରୋତେ
ଯାଉଛି ମିଳାଇ, ଚିନ୍ତା-ସ୍ରୋତୁ ଜନ୍ମି ଯଥା
କଳ୍ପନା-ଆବର୍ତ୍ତ, ଯାଏ ତହିଁରେ ମିଳାଇ ।
ପଥ ମରମର ଛଳେ କରୁଛି ସମୀର
ବଲ୍ମ ସ୍ତବ ଶ୍ଳୋକାବୃତ୍ତି, ଅନୁଷ୍ଟୁପ ଛନ୍ଦେ,
ଯାଉଛି ସେ ସ୍ୱର ମିଶି ଝର୍ଝର-ଝର୍ଝରେ ।
ବଳ ବହୁଜନ ବକ୍ଷେ, ଅଧି ଶ୍ରେଷ୍ଠ ଖଗ
ପିଇଯାଏ ଥରେ ଥରେ ଲୁଣ୍ଠ-ସ୍ରୋତଜଳ,

(୧) ଗର୍ଜନ ଶବ୍ଦ ।

ପରଶେ ତାହାର ଜନ୍ମି ଶତ ଇନ୍ଦ୍ରଧନୁ
କ୍ଷଣେ ଫୁଟେ କ୍ଷଣେ ଲୁଚେ, ଜଳେ ଜଳଦେଳ ।
ଦେଖି ଦେଖି ସେ ସୁଷମା ଅତୃପ୍ତ-ନୟନେ,
ନବୀନ ବିସ୍ମୟେ, ହେଲ ଉର୍ଦ୍ଧ୍ୱେ ଅଗ୍ରସର,
କ୍ଷଣେ ଦେଇ ଦେଖା କ୍ଷଣେ ଖେଳେ ଲୁଚକାଳି
ସ୍ୱର୍ଣ୍ଣମୁଦ୍ରା, ଗଳଗଳ ନନାଦେ କେବଳ
କରେ ଆତ୍ମପରକାଶ, ପ୍ରେତେ ସ୍ତୁଏ ଯଥା
ପଶୁଛି ସଙ୍କୀର୍ଣ୍ଣ ପଥେ ପାତାଳ ବିବରେ ।
ଜଳ ପିଇ ମୃଗଯୂଥ ଯାଉଛନ୍ତି ଫେରି
ଶୃଙ୍ଗୀ ପାଶେ ଶାବକେ ଘେରି, ଅହା କି ଶୋଭା ସେ !
ସେରିଛନ୍ତି ପଲ୍ଲବେ ପତ୍ର ପଦ୍ମପତ୍ରଗୁଚ୍ଛ,
ଯୂଥପତି ଅଗେ ଅଗେ କଢ଼ାଉଛି ବାଟ,
ଚାଲିଛି ପଶ୍ଚାତେ ଯୂଥ, ସଭ୍ୟସଙ୍ଘ ଯଥା
ଜଗତର ଜ୍ଞାନଗୁରୁ ପ୍ରାଚୀନ ଭାରତ
ପଥ ପ୍ରଦର୍ଶକ ରୂପେ ଅଗ୍ରେ, ତାହିଁ ପଛେ
ସଭ୍ୟସଙ୍ଘ ବିଶ୍ୱ, ଗର୍ବ-ଗୌରବ-ଯୁଗରେ ।
କେତେ ବୃକ୍ଷ ବଳ୍କଳରେ ଲେଖି ରହି ଏଠା (୧)
ଟଙ୍ଗାଉଛନ୍ତି ବସ୍ୱହର ଗଣ୍ଡ କଣ୍ଠମୂଳ,
ଦନ୍ତଘାତେ କେହୁ ଅବା କ୍ଷତ, କ୍ଷୀର ବ୍ୟାଜେ

---

(୧) ବସ୍ୱହର ଶ୍ରୀବାଲେମ ।

ଗଡ଼ାଇଦେଉଛନ୍ତି ଅଶ୍ରୁ, ନୀରବ ବ୍ୟଥାରେ ।
ପଡ଼ିଲା ନବୀନ ବନ, ଦୃଷ୍ଟିରେ ଶାଖୀଶ୍ରେଣୀ,
ନ ପାଇ ତାହାଙ୍କୁ ଭେଦ ରବିରଶ୍ମି ଜାଲ
ରହିଛନ୍ତି ଛନ୍ଦ୍ରୁଆ ହୋଇ ଉପରେ ତାହାର ।
ଫୁଟିଛନ୍ତି ବିବିଧ ପୁଷ୍ପ ବିଶୃଙ୍ଖଳ ଭାବେ,
କେତେ ବା ଶୃଙ୍ଖଳେ, ଯଥା ନୂତନ ନ୍ୟ ମାଳା,
ଫଳନ୍ତି ଅଶେଷ ଫଳ, ବସିଛନ୍ତି ଏଥି
ଫଳ ଫୁଲ ପ୍ରଦର୍ଶନୀ, ବସନ୍ତ ବିଶାଳ ।
ପ୍ରକୃତି-ସାଧିକା ଅବା ସଜାଡ଼ି ଭୃଙ୍ଗାରୁ
ଫୁଲେ ଫଳେ କିଶଲୟେ, ବସିଛନ୍ତି ସଖାଦ
ପୂଜିବା ଆଶାରେ ତାର ପ୍ରାଣର ଦେବତା ।
କେତେ ଲତା ପ୍ରାଣଧନ ସୋହାଗେ, ଆଗ୍ରହେ,
ରହିଛନ୍ତି ବିଳମ୍ବି ପଞ୍ଚଳବସ୍ତ୍ର ପ୍ରବାହେ (୧)
ତରୁଗଳେ; କାହିଁ ସ୍ୱୀୟା ଶ୍ୟାମା ଶତାବରୀ
ସ୍ନିଗ୍ଧକୋଳେ, ମୁକୁଳିତ ଶ୍ୟାମ କେଶରାଶି
କମ୍ପୁଛି ସଧୀରେ ବାତେ, ଇତସ୍ତତଃ ହୋଇ ।
କାହିଁ ବା ବଣିଆଙ୍ଗ୍ଠା (୨) ବସି ପାଦପରେ
ସ୍ୱରଶୀଳ ଢାଳୁଛିର, ଗୁରୁ ପାଦତଳେ

---

(୧) ଅଳଙ୍କାର ବିଶେଷ ।
(୨) ଏକଜାତୀୟ ପକ୍ଷୀ, ଏହାର ଫୁଲ କାନ୍ଥବାଂଶଗଢ ମୁଣ୍ଡାକୃତି ।

## ବସନ୍ତ ।

ଚେଲ ପ୍ରାନ୍ତ, ଦୋଳାଉଛି ମୌକ୍ତିକ ଝୋଟ ।
ଅଳଙ୍କୃତ ଲତାଜାମୁ (୧) ପାଟଳ ପଲ୍ଲବେ,
ସାରଲ୍ୟ ରଙ୍ଗ ଯଥା; କମ୍ପା ଦାତା ଦାନେ ।
କାହିଁ ବା ଅରଣ୍ଯଲତା (୨) ମାଡ଼ିଛି ବହଳେ,
ଚନ୍ଦନପାଟୀ କି ତାହା ବନଦେବୀଙ୍କର,
ଅଥବା ଗୌରବ ଦ୍ୱାପ୍ୟ ଶୋଭାସ୍ୱର୍ଣ୍ଣୀଙ୍କର ।
ମଞ୍ଜୁଳ ନିକୁଞ୍ଜେ କେତେ ଫୁଟିଛି ଝିଙ୍ଗିନୀ, (୩)
ଶରତ ନୃପତିଙ୍କର କି ସେ ରୌପ୍ୟଭୂଷା,
ମଧୁପ ବାଦକ ବୃନ୍ଦ, ସ୍ୱରରେ ମଧୁର
ଯେଣୁ, ଫୁଲେ ନଗାରୋଳେ ବାପଗ୍ରାତ ଅଛି ।
ବସିଛି ସେ କୁଞ୍ଜ ଶିରେ ପକ୍ଷୀ ନହବତ,
ପାଦପ ଶାଖାରେ ବସି ଜଳପାବପନ୍ତ
ହେମକାନ୍ତି, ମନ ମଧ୍ୟେ ମନୋରଥ ଯଥା,
ଗାଉଛି ଉଦାସସ୍ୱରେ ଆନନ୍ଦ ସଙ୍ଗୀତ,
ମିଶୁଛି ସେ ଗୀତେ ଅଧି ଦୂରବନସ୍ୱନ

---

(୧) ଏହା ଲତାପର ନାଟକ । ଏହ ଫଳର ଅବଳ ସ୍ୱାଦ ଓ ସୁଗନ୍ଧ ଜାମୁର ଅନୁରୂପ ।

(୨) ସ୍ୱର୍ଣ୍ଣବର୍ଣ୍ଣ ଲତା ବିଶେଷ ।

(୩) ବନାଫୁଲ । କେହ କେହ ଏହାକୁ ଭୀମଶିଅ ଫୁଲ କହନ୍ତି । ଏହାର ସଂସ୍କୃତ ନାମ ଶଙ୍ଖପୁଷ୍ପୀ ।

ସିନ୍ଧୁ ଉର୍ମ୍ମିର ଜଡ ଅଲୋକକା ନାଦ ।(୧)
ନନ୍ଦନକାନନୋପମ ଏ ରମ୍ୟ କାନନ
ସୌନ୍ଦର୍ଯ୍ୟର ଭାଣ୍ଡାଗାର, ନତ୍ ପାରାବାର,
ସେ ସୌନ୍ଦର୍ଯ୍ୟ ଉପଭୋଗ କରନ୍ତି ଜଗତେ,
ବୁଝନ୍ତି ସୌନ୍ଦର୍ଯ୍ୟ ମୂଲ୍ୟ, ଅବର ମହିମା,
ସୌନ୍ଦର୍ଯ୍ୟର ଜୟକାର ଉଚ୍ଚାରନ୍ତି ଭଲେ ।
ଶିଳ୍ପୀଙ୍କ ଶର୍ଯ୍ୟାଶେଷ ହରେ ନେତ୍ର ମନ,
କାହିଁ ଜନା (୨) ଡାଳେ ଧର ମୁକୁତା-ଭ୍ରମର
ଗିର ଅଙ୍ଗେ, କାହିଁ ଅବା ଝେଉଛ ସାଣ୍ଡିଅ (୩)
ଧାପଣି ଖାଲୁଭ ଶୀର୍ଷ, ସ୍ୱର୍ଣ୍ଣାଭ, ରୁଚର,
ଚିତ୍ରକ ମହେନ୍ଦ୍ରର ଖାଣ୍ଡକନାପାଇଁ ।
ବୃନ୍ଦ ହୋଇ ନାନା ପକ୍ଷୀ ଲୁଟୁଛନ୍ତି ଶସ୍ୟ
ଘୋର କୋଳାହଳେ, କି ସେ ପକ୍ଷି-ପାଠଶାଳା,
କରୁଛ ଶାସନ ତାଙ୍କୁ ଅବଧାନ ରୂପେ
ମଳିନ ଚୀବରଧାରୀ ଶବର-ବାଳକ,
ଲୁହାଟି ବଜଃ ସ୍ୱରେ, କେତେବେ ଲୋଷ୍ଟ୍ର ଯାତେ,
ଉର୍ଦ୍ଧ୍ୱ ସେ ଧାର ଶିଶୁ, ଜରେ ତାଲୁ ଭଯ୍ୟ,

---

(୧) ସ୍ତବ୍ଧଲୀ ।
(୨) ବାଜରା ଜାତୀୟ ଶସ୍ୟ । ଏହାର ଶସ୍ୟ ମୁକ୍ତା ସଦୃଶ ।
(୩) ଶସ୍ୟବିଶେଷ ।

ମହେନ୍ଦ୍ର ।

ଭକ୍ତର କାରଣ ସନ୍ଧ୍ୟେ ନ ହୁଏ ଯେ ଭୀତ,
ସେହୁ ଏକା ବୀର, ସେହୁ ଅସୀମ ସାହସୀ ।
ନିରସ୍ତ୍ରର ଅସ୍ତ୍ର ବିନା କେବଳ ସାହସ,
ସେ ଯାହାର ଚିରସଙ୍ଗୀ ସେ ଭକ୍ତ ତାହାର,
ବାଲକାନ୍ତ ଅଭ୍ୟସ୍ତ ସେ ସ୍ୱାବଲମ୍ବନରେ,
ଆତ୍ମନିର୍ଭରତା ଯାର ମୂଳମନ୍ତ୍ର ପ୍ରାଣେ,
ମହାନ୍ ଈଶ୍ୱର ତାର, ସହାୟ ସର୍ବଥା ।
ଦୂରେ ଶୋଭେ ଶସ୍ୟାଚ୍ଛନ୍ନ ପକ୍ୱାଣବାଟିକା (୧)
ପୂର୍ଣ୍ଣପଲ୍ଲବମଣ୍ଡୀ, ଶାନ୍ତ ନୀଡ଼ ପ୍ରାୟ,
କିଠେ ଉଠୁଁ ପାକଧୂମ ଉତ୍ପ୍ରେକ୍ଷାଏ ମନେ
ଋଷ୍ୟାଶ୍ରମସମୁତ୍ଥିତ ଯଜ୍ଞ ଧୂମ ଭ୍ରମ ।
ଲଙ୍ଘି ସାହୀ ପରେ ସାହୀ, ପଲ୍ଲୀ ପରେ ପଲ୍ଲୀ,
ଭ୍ରମଣ ମଣ୍ଡଳବାଟୀ କଲି ଅନ୍ୱେଷଣ,
ଦକ୍ଷଭାଗେ ଡିଙ୍ଗିଚୂଡ଼ା ଉଠିନ୍ତି ଗର୍ବାକେ
ଚାହିଁ ଦେଲି ପ୍ରାୟ, ବାମେ ନିରନ୍ତ୍ର କାନନ
ଯାଇଛି ଓଢ଼ାଇ ସ୍ନେହେ ଯାତାଲକୁ ବେଦ ।
ଅନ୍ୱେଷଣ କାଳେ ସେହୁ ବିକଟ ସଙ୍କଟ,
ପଦେ ପଦେ ଦେଉଥାଏ ଭ୍ରାନ୍ତି, କ୍ଲାନ୍ତି, ବାଧା,
ମାତ୍ର ତୁଚ୍ଛ ଜ୍ଞାନକରି ନ ମାନି ତାହାକୁ

---

(୧) ଶବରପଲ୍ଲୀସମୂହ ।

ନେଉଥାଏ ଟାଣି ଯେବେ ଊର୍ଦ୍ଧ୍ୱେ ଦୃଷ୍ଟି ଧରି,
ମୃତ୍ୟୁଞ୍ଜୟ ବୃକ୍ଷ ଦିନା ସୌନ୍ଦର୍ଯ୍ୟ ନିକଟେ,
ନୋହିଲେ ପତଙ୍ଗ ଅଙ୍ଗ ଦଅନ୍ତା କି ଢାଳି
ଅଗ୍ନିକୁଣ୍ଡେ, ନେତ୍ରପ୍ରୀତି ସମ୍ପାଦନ ଆଶେ ।
କାହିଁ ବା ପ୍ରକାଣ୍ଡ-କାଣ୍ଡ ମହୁଲ କାନନ,
କାହିଁ ଶାଳବନ, କାହିଁ ବିଶାଳ ଅଳନ (୧)
ଶୋଭେ ମହେନ୍ଦ୍ରର ବନ୍ଧୁ ଊର୍ଦ୍ଧ୍ୱବାହୁ ପ୍ରାୟ,
କାହିଁ ବା ନବେରୁ (୨) ବେତ୍ରୁ, ତମାଳ ଲତାରେ
ଝଙ୍କାରବୃନ୍ଦ, ଯଥା ମଧୁରୀ ମାନସ୍ତ ।
କାହିଁ ପୀତ ଶେଫାଳିକା ଯେଉଁ ଅଙ୍ଗଭୂଷା
ସୁବର୍ଣ୍ଣ ସୁମନେ, ଦଏ ଚୌପାଶେ ନିକ୍ଷେପି,
ପୁଷ୍ପି ଘଳ କୋବଦାର (୩) ବନମାଳମାରେ
ଦେଇଛି ମିଶାଇ ସ୍ୱରୁ ମାଳମା ନଜର,
କେତେ ଗିରିଗୁଳ୍ପକଙ୍କ (୪) ଦୋହଲେ ସମୀରେ,
ବନଦେବୀଙ୍କର କ୍ରୀଡ଼ା କନ୍ଦୁକ ପସ୍ୱେ,
ଟଳ୍ପାଏ ଉଆଡ଼ ଦ୍ରୁମ ଦୀର୍ଘପୂର୍ଣ୍ଣ ଗ୍ରୀବ, (୫)
ଭଲେ ଶୋଭେ ଗିରିଗୁଳ୍ମ-ବାର୍ଷ୍ଣ୍ୟୁ, ହରଡ଼,

(୧) ଏକଜାତୀୟ ବଣାଲବୃକ୍ଷ । (୨) ପୁରୁଷୁବାଗ । (୩) ଜଳବର୍ଦ୍ଧନ ।
(୪) ଦୃଶ୍ୟପୁଷ୍ପ ବଣେଷ । ଏହାର ପୁଷ୍ପ କୈତବଦବମ୍ବ ସଦୃଶ ।
(୫) ଏକଜାତୀୟ ବୃକ୍ଷ ।

ସବେନ୍ ।

ଫଳ ପୁଷ୍ପ ଭରେ, ବାଳ ମାଲୁର (୧) ଗଛରେ ।
ସୁବର୍ଣ୍ଣ ବେଢଣ ପକ୍ଷୀ ଏକ ଅନ୍ତରାଳେ,
ଗାହା ଏ ମଧୁର ସ୍ୱର—ଅଗାଧ ଅସ୍ଫୁଟ,
ନାହିଁ ସେ ଅମୃତ ସ୍ୱର ପାର୍ଥିବ ଯନ୍ତ୍ରରେ,
ପୁତ୍ରଙ୍କ ଶବ୍ଦର ନାମ ବାଡକେ ସୋତ୍ସୁକେ,
ଲଭିଲ ଉତ୍ତର ତାର, ସେ "ବଣବାଟୋଇ",
ଧୀଯକ ଲେଖନୀ (୨) ମୁନେ ଲେଖିଲ ସେ ନାମ
ସଚଳ ଦୋଳରେ ବସି, ମାତ୍ର ବୃଥା ଚେଷ୍ଟା,
ହୋଇଗଲା ଦେବାଙ୍ଗରେ ପବନର ଲେଖା,
ଶାନ୍ତ ହେଲ ତହିଁ ସେହୁ ବ୍ୟର୍ଥ ଦୁଃସାହସ ।

ଦିବସର ଶେଷରଶ୍ମି ଭଜିଲା ମ୍ଳାନିମା,
କ୍ରମେ କ୍ରମେ ହୋଇ ଲୀନ ବନ୍ୟ, ବୃକ୍ଷରାଜି
ତଳର ସାନ୍ଦ୍ରରେ ଯାଇ ଅଦୃଶ୍ୟ ଛତ୍ରଣ,
ସ୍ନେହ ରଶ୍ମି ତହିଁ ଲୁଚିଗଲା ଶରେ,
ବର୍ଷିତବଦନକାନ୍ତ ଶ୍ଳଦାବସନ୍ତ
ଉଡ଼ ଅସି କ୍ଲାନ୍ତ ଦେହେ, ବସି କ୍ଷଣେମାତ୍ର
ନବାପପାଦପବୃନ୍ଦେ, ତଦନ୍ତେ ଲୁଚନ୍ତ
ଲୁଚଯାଏ ପର୍ଣ୍ଣାଚ୍ଛନ୍ନ ଲୁଳାସ୍ୟେ ଯେସନ ।



(୧) ବେଲ୍ । (୨) ଷେଦ୍ନୀର ।

## ଦ୍ୱିତୀୟ ସର୍ଗ ।

ଆସିଲେ ଗୋଧୂଳି ଖୋସି ସ୍ୱବର୍ଣ୍ଣ କୁନ୍ତଳେ
ସ୍ୱସନ୍ଧ୍ୟାରାଗ-ଫୁଲ—ରୁଚିର, ଭାସ୍ୱର,
ଗିରିବୃକ୍ଷେ ସ୍ତରେ ସ୍ତରେ ବସିଯାଇ ଘନ,
ଧବଳ କାନ୍ଦୁଲ କଣ୍ଠା ମେଘର ସୁଷମା
ସୁନେଲି ରଙ୍ଗତା (୧) ଛାପ, ଅତି ଚାରୁତର ।
ଦେ ସଜ୍ଜିଲା ଶିଖି-କଣ୍ଠ-ଶ୍ୟାମଶୈଳ ଶିରେ
ଏ ମୁକୁଟ, ଢଳଢଳ ରତ୍ନ ପ୍ରଭାହରୀ,
ଏ ଧୈର୍ଯ୍ୟ-ହିନ୍ଦୋଳା ଶୋଭା, ରୂପ ପ୍ରାଣହର,
ପରାସ୍ତ ତା ପଦେ ଭାଷା, ପରାସ୍ତ କଳ୍ପନା ।
ହାୟ, ସେହି ସ୍ୱପ୍ନ ଶୋଭା, କବି ଅଁଉଳାଏ
ଭବ ନଶ୍ୱରତା ନାଟ୍ୟ, ଗଲାକି ମିଳାଇ
ସାନ୍ଧ୍ୟ ଅନ୍ଧକାର ଗର୍ଭେ, ମିଳାଏ ଯେସନ
ମୃଣ୍ମୟୀ ପ୍ରତିମା ଜଳେ ବିସର୍ଜନ ଅନ୍ତେ,
ମିଳାଇଲା ତହିଁ ସଙ୍ଗେ ମୋ ହୃଦୟ ଆଶା ।
ହେଲା ଅନ୍ଧକାର ଘନ, ସନ୍ଧ୍ୟାଦେବୀ ତବେ
ଘନ କୃଷ୍ଣ କେଶପାଶ ଦେଲେ ମୁକୁଳାଇ,
ହସିଲେ ଉଡ଼ଣା ଟେକି କୁସୁମ-ଅପ୍ସରୀ
ରୂପେଶ୍ୱରୀ, ଚହଟାଇ ମଧୁର ଆମୋଦ ।
ଶ୍ୟାମାଙ୍ଗେ ଭାସ୍ୱମଣି ନାଚି ରଙ୍ଗିଣୀ

---

(୧) ଜଳ ।

ସଙ୍କେତ, ।

ପଶିଲେ ଭଦନ୍ତେ, ଗଲ୍ଲ ଫୁଲପଲ୍ଲ ଗଡ଼ି ।
ବହଲ ଅନ୍ଧାରେ ଲୁଡ଼ି ପର୍ବତ ପାଦପ
ଛାୟାମୟ ପ୍ରେତରୂପ କଲେକ ଧାରଣ,
ନ ଦଶିଲ୍ଲ ପଥ ଆଉ, ଭଗ୍ନସ୍ତୂପ ସବୁ
ଅନ୍ଧକାରେ ହୁଏ ଅନ୍ଧ ସ୍ୱାଭାବିକ ଏହା ।
ଅହୋ, କି ଦାରୁଣ ଶୀତ, ପଡ଼େ କି ଶିଶିର
ଭ୍ରମର ଭଣ୍ଡାର ଦେଲ୍ଲ ଅଜାଡ଼ି ଏ ବନେ,
ସ୍ତମ୍ଭେ ହେଲ୍ଲ ଯେସ୍ନେ ଅଙ୍ଗ ପ୍ରତ୍ୟଙ୍ଗର ଶକ୍ତି
ହୋଇଗଲ୍ଲ ଅବସାଦ ଅସାଡ଼ ଅବଶ
ସନ୍ଧ୍ୟାରେ, ତହୁଁ ଆଉ କୋହୁ ଅନ୍ତସର
ଯାପିଲେ ଯାମିନୀ ସବେ ବୃକ୍ଷବସାଠାରେ । (୧)



(୧) ଏଠାରେ କୋଟିଏ ପଥବନ୍ଧତାସ ଅଛି । ଏହା କୃତ୍ରିମ ସବୁ ମେଣ୍ଡକ-ଦ୍ୱାର ନିର୍ମିତ । ଏ ସ୍ଥାନର ଉତ୍ତର ପାର୍ଶ୍ୱସ୍ଥଳ ଜାଣି ରାଜାମାନେ ଏଠାରେ ବାସ-ବର ରହୁଥିଲେ ତେଣୁ ଏହା 'ରାଜଘୋ' ନାମରେ ଅଭିହିତ ।

## ତୃତୀୟ ସର୍ଗ ।

ଅହୋ କି ଐଶ୍ୱର୍ଯ୍ୟ, ଯାକେ ବଳଗର୍ବେ କୁଣ୍ଠୀ,
ଯେସନ ସଶୋକା ସୀତା ଅଶୋକ କାନନେ
ଉପବିଷ୍ଟା, ବେଢ଼ିଛନ୍ତି ଚଉକଡ଼ ଦାସୀ
ଦୁରନ୍ତା ଦାନବୀ ଚେଟୀ—ଦୁର୍ଗତବୃନ୍ଦ୍ୟାକେ ।
କେ ରଚିଲା ଏ ଅକୂଳ ବନ-ସିନ୍ଧୁ ବକ୍ଷେ
ଅକ୍ଷୟ-ଅଶ୍ରମ, ହେଉ ପଛେ ସ୍ୱର୍ଣ୍ଣ ସେ,
ମାତ୍ର ଶାନ୍ତ ଅନନ୍ତର ମାଧୁରୀ-ମଣ୍ଡିତ;
ବ୍ରିଟିଶକେଶରୀ ଧନ୍ୟ, ଆଦର୍ଶ ତାଙ୍କର
ସୁସ୍ଥାପନ ସୁପାଳନ ସୁରକ୍ଷଣ ନୀତି,
ତାହାଙ୍କର ସମୁଦାର ଧର୍ମନୀତି ସିନା
ଆଣିଅଛି ବର୍ତ୍ତମାନେ ଯେସନ ଅସତେ,
ଆଣିଅଛି ଧର୍ମରାଜ୍ୟ ଏ ଭାରତେ ପୁଣି,
ନୃପେନ୍ଦ୍ର ସେ ଶାନ୍ତ ରାଜା, ଭାରତଭାଗ୍ୟର
ବିଧିବନ୍ତ ଅଭଧନ୍ତ ରୂପା ମହାଦାନ,
ଲଭ ଯେହ କଳ୍ପଦ୍ରୁମ-ସ୍ନିଗ୍ଧ-ସୁଧା-ଛାୟା
ବହନ୍ତି ଶୀତଳ ତନ୍ତ୍ର-ସନ୍ତୃପ୍ତ ଭାରତ ।
ଧର୍ମ ସିନା ମରୁସ୍ଥଳେ ପାଦପ ରୋପଣ,

## ମହେନ୍ଦ୍ର ।

ଧର୍ମପିତା,—ନିର୍ଝରସେ ଭରସା ସ୍ରବାନ,
ନିର୍ମ୍ମାଣି ପାନ୍ଥାବାସ ଏ ହତାଶ ଦେଶେ
ଅର୍ଜ୍ଛନ୍ତି ମହାପୁଣ୍ୟ, ଅକ୍ଷୟ ସୁକୀର୍ତ୍ତି,
ତାଙ୍କର ସୁକୃତ ତାଙ୍କୁ ଦେଇଛି ଦେବତ୍ୱ ।

ମହେନ୍ଦ୍ର ଉତ୍ତୁଙ୍ଗ ଶୃଙ୍ଗେ ଶୋଭେ ସ୍ୱର୍ଣ୍ଣବସା,
ନାହିଁ ଦବଜ୍ୱାଳ, ତେଣୁ ତରୁଣୀତଳ ସେ,
ଏକମାସୀ ସ୍ଥଳୀ, ଖାଇ ମାସମାସ ବନା
ନାହିଁ ତହିଁ ଝଙ୍କାର ଉପର ମାସର ।
ହେଲା ନାହିଁ ସ୍ୱପ୍ନେ ନିଦ୍ରା, ନିଦାରୁଣ ଶୀତ
ଭେଦି ତୂଳ, ଚର୍ମ, ମାଂସ କମ୍ପାଇଲା ଅସ୍ଥି,
ବହିଲା ଅଳକେ ଆସି ପରହର ଶେଯ
ଯାମିନୀ-ଯୌବନେ, ସ୍ତବ୍ଧ ନିଃଶବ୍ଦ ରୌରବ,
କେବଳ ଉଠୁଛି ଥର ମହା ଅରଣ୍ୟାନୀ
ଥରେ ଥରେ ଭୃଷୀତଳ ବକ୍ଷ ଭୂହାଟେ,
ଅହୋ, କି ଶ୍ରବଣବ୍ୟଥ କଠୋର ଝଙ୍କାର,
ଶୁଣିଣ ଉମତ ହୁଏ ଆରକ୍ତ ପାଷାଣ,
ଆଉ ଏକ, ସେ ହୁଙ୍କାରେ କ୍ଷୁଧ୍ୟ ଶ୍ୱାପଦର
ହୋଇଯିବ ପ୍ଳୀହା ଫାଟି—ଚର ବସୁସ୍ଥଳ ।

ବେଳେ ବେଳେ ଠକଠକ ଠକା (୧) ଏବେ ଶୁଭ
ଶସ୍ୟକ୍ଷେତ୍ର ମୃଗ ଶଶା ବରାହ ସମ୍ଭବେ,
ଅସଭ୍ୟ ବର୍ବର ଦସ୍ୟୁ ସମାଜେ ଯେମାନେ,
ଏ ଅଦ୍ଭୁତ ଉଦ୍ଭାବନ ତାଙ୍କର କରଣୀ,
କେଡ଼େ ସୂକ୍ଷ୍ମ ସୁକୌଶଳ, କେଡ଼େ ସ୍ଥୂଳ ମେଧା,
ଲତା-ତନ୍ତୁ ଆକର୍ଷଣେ ସୁଦୂର କେଦାରୁ
ସନ୍ତ୍ରାନ୍ତ ପଶୁ ପକ୍ଷୀ ପର୍ଣ୍ଣଶାଳେ ଶୋଇ ।
ଏଡ଼େ ବଳ ବୈଜ୍ଞାନିକ ବୁଦ୍ଧି ଯେ କାହାର,
ସେ ଯଦ୍ୟପି ହୀନ, ତେବେ କଷ୍ଟେ 'ହୀନଜ୍ଞାନ'
ହେଉଛି ସାଧିତ ବଡ଼ କାର୍ଯ୍ୟ ଏ ଜଗତେ ।
ହୀନ ଜଳବିନ୍ଦୁ କରେ ପାଷାଣକୁ କ୍ଷୟ,
ହୀନ ଅଗ୍ନିକଣା ପାରେ ଜଗତେ ଦହନ,
ହୀନ ବୃକଲାସ ନାଶେ ମତ୍ତ ମତଙ୍ଗଜେ । (୨)
କଣ୍ଟକ ପ୍ରାଙ୍ଗଣେ ଧୂମା—ଶବର-ସହିତ,

---

(୧) ଦୂରସ୍ଥ ଶସ୍ୟକ୍ଷେତ୍ରରେ ଦୁଇ ଖଣ୍ଡ ବାଉଁଶ ଗୁଣ୍ଡରେ ଖଣ୍ଡିଏ ଧାରଣା-ବାଉଁଶ ବସି ତାହା ତଳେ ତେର୍ଛାଭାବରେ ଖଣ୍ଡିଏ ଲମ୍ବାବାଉଁଶ ଶୋଇ ତାହା ଅଗରୁ ଲତା ବାନ୍ଧି ନେଇ ଶବରମାନେ ଘରଠାରେ ବାନ୍ଧନ୍ତି । ରାତିରେ ସେହି ଲତାକୁ ଟାଣିଲେ ବାଉଁଶରେ ବାଉଁଶ ବାଜି ଠକ୍ ଠକ୍ ଶବ୍ଦ ହୁଏ । ସେହି ଶବ୍ଦରେ ବନ୍ୟଜନ୍ତୁମାନେ ପଳାଇଯାନ୍ତି । ଏହି ଯନ୍ତ୍ରକୁ 'ଠକା' କହନ୍ତି ।

(୨) ଏଣ୍ଡୁଅ । ଏଣ୍ଡୁଅ ହାତୀ ଶୋଣ୍ଡଭିତରେ ମୁଣ୍ଡକୁ ଉଠିଗଲେ ହାତୀ ପାଗଳ ହୋଇ ମରିଯିବାର ପ୍ରବାଦ ଅଛି ।

## ମହେନ୍ଦ୍ର ।

କ୍ଷୀଣ ତେଜେ, ଧୀରେ, ଯଥା ଚନ୍ଦ୍ର ପ୍ରଭାକୁ,
କ୍ଷଣେ କ୍ଷଣେ ଅନ୍ଧକାର ଢାଙ୍କି ତା ଉପରେ
ଲୁଣ୍ଠକର, ଲୁଣ୍ଠାଉଛି ଆଲୋକର ମୂଲ୍ୟ,
ଆଲୋକର ମୂଲ୍ୟ ସିନା ଲୁଣ୍ଠାଏ ଅନ୍ଧାର,
ନ ଥାନ୍ତା ଯଦ୍ୟପି ଦୁଃଖ, ଥାଆନ୍ତା କି ତେବେ
ସୁଖର ଗୌରବ ? କେବେ ଜଳ ଉଠି ଧୂଳି
ଅନ୍ଧାରେ ଅଢ଼େଇ ଦେଇ କରୁଛି ବହଳ ।
ଅନ୍ଧାରେ ଆଲୋକ ନାଶେ, ଆଲୋକେ ଅନ୍ଧାର,
ଲଭିଛି ଦେବଙ୍କ ଖେଳ ରହସ୍ୟ ବିଷମ ।
ଦୁହେଁ ଦୁହଙ୍କର ଯେସ୍ତେ କ୍ରୀଡ଼ାପ୍ରହେଳିକା ।
ଉଡ଼ୁଛି ସ୍ଫୁଲିଙ୍ଗପୁଞ୍ଜ, ଆଲୋକ-ପୁଷ୍ପ କି
ଫୁଟିବା ମାତ୍ରକେ ଝଡ଼ି ଯାଉଛି ମିଳାଇ,
ଯେସନ ମିଳାଇଯାଏ ଜୀବନ-ସ୍ଫୁଲିଙ୍ଗ
ଲହମାକ (୧) ମଧ୍ୟେ ଉର୍ଦ୍ଧ୍ୱ ଶୂନ୍ୟେ କେଉଁଆଡ଼େ,
କେଉଁପଣେ ଜାତମୃତ (୨) ସେ ଆଲୋକ ଫୁଲ,
ମାତ୍ର ତାର ମହାଶୌର୍ଯ୍ୟ ମହାର୍ଘ ସମ୍ପତ୍ତି,
ବଳେ ସେ ଶୋଭାର ମୂଲ୍ୟ କୋଟି କୋହିନୂରୁ ।
ଏକାଳେ ନୀରବ ସଙ୍ଗେ, ଉଠୁଛି କେବଳ

(୧) ମୁହୂର୍ତ୍ତ ।
(୨) ଜାତ ମାତ୍ରେ ଯେ ମୃତ ହୁଏ ।

ଷଷ୍ଠ ସର୍ଗ ।

ଘାଏଁ ଘାଏଁ ସ୍ୱନ, ଏ କି ଜଳଧିର ଗର୍ଜନ ?
ପ୍ରକୃତ ତାପସୀ ଅବା ବସି ନିକାଞ୍ଚନେ
ଉଚ୍ଚାରେ ଅନ୍ତରସ୍ୱରେ ପ୍ରଣବ ମନ୍ତ୍ରର,
ସେ ଅମୃତ ପୂର୍ଣ୍ଣ ସ୍ୱର ଉଠି ଊର୍ଦ୍ଧ୍ୱଦେଶେ
ଖେଳବୁଲେ ମହେନ୍ଦ୍ରର ଶୃଙ୍ଗେ ଶୃଙ୍ଗେ ଯାଇ ।
କେତେ ଜ୍ଞାନୀ, ଭକ୍ତ, ଯୋଗୀ, ସନ୍ନ୍ୟାସୀ, ବୈରାଗୀ
ପୂଜୁଥିଲେ ଏ ପର୍ବତେ ମହାତୀର୍ଥ ମଣି,
ହୋଇଣ ବଞ୍ଚିତ ସେହୁ ସାଧୁ ସହବାସ
ସ୍ମର ଗତ ଗୌରବର ଶ୍ଳାଘ୍ୟତର ମୂର୍ତ୍ତି
ଛାଡ଼ୁଛ କି ଖେଦେ ଗିର ହତାଶ ନିଶ୍ୱାସ !
କିମ୍ବା ଏ ମହେନ୍ଦ୍ର ଯେଣୁ ଉତ୍କଳନନ୍ଦନ,
ତେଣୁ ମାତୃବେଦନାରେ ଲଭି ଗୁରୁବ୍ୟଥା—
ନିଦାରୁଣ ମନସ୍ତାପ ବାଣ୍ଟିବାକୁ ଦଣ୍ଡେ
କରୁଛ କି ହାହା ଧ୍ୱନି ଅଟ୍ଟରଟେ, କରୁଣେ;
ବର୍ଷି ଶୋକାଶ୍ରୁ ସ୍ରୋତେ, ନିର୍ଝରନ୍ଦୁ ଛଳେ ।
ସର୍ବାଧ ଉତ୍କଳର ସମୃଦ୍ଧି ଚନ୍ଦ୍ର
ଥିଲା ଯେ ଉଜ୍ଜଳ, ଏବେ ନଗଣ୍ୟ ସେ ହାୟ !
ଝରିଛି ପିଣ୍ଡ, ପ୍ରାଣ ଯାଉ ଝଳକଲେ,
ମାତୃମାତା ମହାମାତା ସେ ମାତୃମନ୍ତ୍ରର
ଭୁଲିଲେ କି ଝରେ ଅଶ୍ରୁ ଯେ ଅଭାଗା ସୁତ,

ମହେନ୍ଦ୍ର ।

ନାହିଁ ତାର କେହ, ନୁହେ ଜନନୀ ତାହାର
ପୁଣ୍ୟବତୀ, ଭାଗ୍ୟହୀନା ତରବଶ୍ୟା ସେହୁ ।
ମହେନ୍ଦ୍ର, ନିର୍ଜନ ଭେଟ ଲଭନ୍ତୁ ଏକ୍ଷଣି,
ଅସ୍ତିଲେଣି ନିଦ୍ରା ଏଙ୍କ ସମସ୍ତ ସଙ୍ଗିଏ,
ଅନ ସଙ୍ଗୀ—ସଂସାରର ଚିନ୍ତା, ରହିଲଣି
ତଳେ, ନୁହେ ସାଧ୍ୟ ତାର ଏତେ ଉଚ୍ଚେ ଉଠି
କଳୁଷିତ କରିବ ତୋ ଦେବପୂତ ଦେହ,
ବନ୍ଧୁର ପିଚ୍ଛିଳ ତୋର ଦୁର୍ଗମ ପଥେ
ଆରୂଢ଼ ପଡ଼ିଲା ଦୁଷ୍ଟ ନିର୍ଘାତେ ଉଦ୍ଧୃତ,
ସଙ୍ଗ ହୋଇ ସେହିଠାରେ ରହିଗଲା ତହୁଁ ।
ନାହାନ୍ତି ତ ଆଉ କେହି, ସହୃଦର ବନ୍ଧୁ,
କହିବୁ କରୁଣା କରି ଯେନ୍ନ ମୋ ବନ୍ଧୁ,
ତୁ ସର୍ବଜ୍ଞ, ସର୍ବଦର୍ଶୀ, ଘନ-ଦୂତେ ତୋର
ଜାନମତି, ନାହିଁ ସ୍ଥାନ ଅଗମ୍ୟ ତୋହର
ତ୍ରିଭୁବନେ, ଯେଉଁ ଗୁପ୍ତ ଅଜ୍ଞାତ ପ୍ରଦେଶେ
ହୁଏ ଭାଗ୍ୟ ଲକ୍ଷ୍ମୀଗଣ୍ଡା, ସେ ଦେଶ ସମ୍ବାଦ
ଜାଣନ୍ତି ସେମାନେ ଅଛି ତୋତେ ପ୍ରତିଦିନ,
ଏଣୁ ତୁ ରେ ଚିହ୍ନମଣି ଉଜଳ ସର୍ବଥା
ମୋର ଏ ପ୍ରଶ୍ନର ଯଥା ଉତ୍ତର ପ୍ରଦାନେ ।
ତବ ହେବେ ଜଳ ହେବ ସତ୍ୟ, ଧନ୍ୟ ହେବ

## ତୃତୀୟ ସର୍ଗ ।

ସ୍ୱର୍ଗେ, ନରେ ହେବେ ଦେବ, ସେ ଶୁଭ ଦିନର
ଶୁଭ ଆଗମନ ଆଉ ଅଛି କେତେ ଦୂରେ ?
ସୁପ୍ତି-ମୌନା ମାତୃମୂର୍ତ୍ତି ଲଭିବ ଚେତନା
କେତେ କାଳେ, ମହାସତ୍ତ୍ୱ ମହାପ୍ରାଣ ଗୁହ,
ଅବର ରୁ ପୂର୍ଣ୍ଣ, କହ କେତେ କାଳ ପରେ
ଚୋଡ଼ ଗୁଣଧାରୀ ପୂର୍ଣ୍ଣ କଳାବନ୍ତ ନରେ
ମଣ୍ଡିବେ ଉତ୍କଳ-ଅଙ୍କ, ଉଠିବ ସେ ହସି ।
ଉତ୍କଳ-ବାଲ୍ମୀକି ବ୍ୟାସ — ଦାସ ବଳରାମ
ଜଗନ୍ନାଥ, ଶୂଦ୍ରମୁନି ସାରଳା ପ୍ରଭୃତି
କେବେ ଫେର ଆସି ପୁଣି ଜାଳିବେ ଉତ୍କଳେ
ଧର୍ମର ଉଜ୍ଜ୍ୱଳ ବର୍ତ୍ତି, ଦେଖାଇବେ ପଥ
ତମସ୍-ଅନ୍ଧାରବଣା ମାନବ ସମାଜେ ?
ଉତ୍କଳର କାଳିଦାସ — ଭଞ୍ଜ, ଭବଭୂତି —
ଦୀନକୃଷ୍ଣ — ସାରସ୍ୱତ ପ୍ରତିଭା-ପ୍ରଭବୁ,
କେବେ ଆସି ବଜାଇବେ କାବ୍ୟ-କୁଞ୍ଜବନେ
ଉଚ୍ଚାଟ ମୁରଲୀ, ଶୁଣି ସେ ମୋହନ ଧ୍ୱନି
ଧାଇଁବେ ଭାବଭକ୍ତ — ଗୋପାଳ ଗୋପିକା
କାବ୍ୟ-ସାହିତ୍ୟରୂପ ବୃନ୍ଦାବନ ଧାମେ,
କଳ୍ପନା-ଯମୁନା ସ୍ରୋତ ବହିବ ଉଜାଣି,
ଯାଇଥିଲେ ନିର୍ମାଣି ସେ ସାହିତ୍ୟକ୍ଷେତ୍ରରେ

ମଦେଭ ।

ଯେ ବସ୍ତୁ ମହାସୌଧ, ଜୀର୍ଣ୍ଣ ତାହା ଏବେ,
ସେହୁ ଉପାଦାନେ ସେତ ଗଢ଼ିବେ ଅବର
ଉତ୍କଳ-ବାଣୀଙ୍କ ରମ୍ୟ ସ୍ୱର୍ଣ୍ଣ ମନ୍ଦିର ।
କେବେ ତାକେ ପ୍ରତ୍ୟାବୃତ୍ତ ହେବେ ପୁନରପି
ଉତ୍କଳେ ମିହରକଳ୍ପ ପଠାଣିସାମନ୍ତ,
ଅଦ୍ଭୁତ ପ୍ରତିଭା-ଶିଖା ଜଟିଳ ପ୍ରଜ୍ୱଳ,
ସ୍ତମ୍ଭିବ ଚାହିଁବା ନେବେ ପାଶ୍ଚାତ୍ୟ ଭୂଖଣ୍ଡ,
ସଭ୍ୟ, ସମୁନ୍ନତ, ସେହୁ ମହାଶିଖା ପ୍ରତି,
ଜବେଶନ୍ତ୍ର ଯଥା ହର୍ଷେ ଦର୍ଶନକର
ଅକାଶେ ଉଜ୍ଜ୍ୱଳିମାନ ପ୍ରଭାପଞ୍ଜରଶ୍ମି । (୧)
କେବେ ଶ୍ୟାମ-ବଦନମ ଉତ୍କଳମାତାର
ଉଦୟ ସ୍ୱର୍ଣ୍ଣ ପକ୍ଷ ବସ୍ତ୍ରାଦ ଗୌରବେ,
ଜଳବ ପ୍ରସରେ ପୁଣି ଗତ ଗୌରବର
ନବୀନ ପ୍ରଶାପ, କେବେ ଏ ଅସ୍ପୃଶ୍ୟ ତ
ଓଡ୍ରଷ ଜାତିର-ଷିବ କ୍ଲୀବତାତ ଅଶ୍ୱ,
କେବେ ବହୁ ସମୁଲ୍ଲାସ-ବସନ୍ତ-ପବନ
ଉଡ଼ାଇବ ପ୍ରାଣାଗ୍ନିରୁ ଜରୁଦ୍ୟମ-ଭସ୍ମ—
ଅବରଣ, ହେବେ କର୍ମେ ନରତ ସରବେ ।
ଶ୍ରବଣେ ବ୍ୟାକୁଳ ସୁହୁଁ, ବହୁ ଧାଉଁଧାରେ

---

(୧) ଉଲ୍କାପାତର ।

## ଚତୁର୍ଥ ସର୍ଗ।

ପୂର୍ଣ୍ଣ କର ମହେନ୍ଦ୍ର, ମୋ ଉଦ୍‌ଭ୍ରାନ୍ତ ବାସନା
ଏ କହିଲୁ—"ଟଳମଳ ଭାଗ୍ୟ ସଦା ଭବେ,
ଯେସନ ବେତସ 'ଲତା ଅସ୍ଥିର ମୋ ଦେହେ,
ଦୃଶ୍ୟମାନ ଜଗତେ ସର୍ବେ ପରିବର୍ତ୍ତନଶୀଳ—
ଗ୍ରହ ତାରା ରବି ଶଶୀ ଧରା ଗିରି ଆଦି,
ଆଜି ଏ ଉତ୍କଳ ଭାଗ୍ୟ ସ୍ଥାଣୁ ନିସ୍ପନ୍ଦନ,
ଉତ୍ଥାନ ପତନ ପୁଣି ଧ୍ୱଂସ ବିସୃଜନ
ଗୁନ୍ଥା କ୍ରମେ ମାଳିକାରେ, ନଷ୍ଟ-ମୁଣ୍ଡରେ,
ଘୂରୁଛି ସଂସାର ଚକ୍ର ରଥପାଦ (୧) ପ୍ରାୟ,
ସେହି ଘୂର୍ଣ୍ଣାବର୍ତ୍ତ, ଧନେ ଅର୍ଣ୍ଣବ ନିଶ୍ଚୟ
ଉତ୍କଳ ଅଗାଧ ଦୈନ୍ୟ—ଅଗାଧ ଗୌରବ,
ପ୍ରସବିବ ଏ ଉତ୍କଳ ଶତ ଶତ ରତ୍ନ,
ସହସ୍ର ସାରଳା, କବିସୂର୍ଯ୍ୟ କୋଟି କୋଟି,
ହେବ ସେ ଉନ୍ନତଗର୍ବେ ପୁଣି ଗରବିଣୀ।"

ପାହିଲା ରଜନୀ, ହେଲେ ନିଦ୍ରାର ଭାବଏ,
ନିଦ୍ରାର ଯେସନ ଶୋଭ-ବଳାହାର-ହାସ,
ଅଥବା-ବିଧବା ମୁଖ, ଚମ୍ପା ଦୃଷ୍ଟ ନେତ୍ର।
ବଢ଼ଇ ବାଯ୍ୟସ ଉଠେ, ଶୁଣି ସେ ଅସ୍ତ୍ର

(୧) ରଥଚକ୍ର।

ମହେନ୍ଦ୍ର ।

ଲୁଚିଗଲେ ଜଗତର ଜନ୍ତୁଏ ଯେ ଯାହିଁ,
ଅବଧାନ ଘୁଣ୍ଟ ଶୁଣି ଲୁଚିପିଲା ପ୍ରାୟ,
ଅଥବା ଶାରଦ ଯଥା ପାଦୁକାଙ୍କ ଡାକେ ।
ଗୁହ୍ମିଲ ଲେଖକ ଦ୍ୱାର ବନସ୍ଥଳ ଜେମା—
କୁସୁମ-ସୁନ୍ଦରୀ, ସୌମ୍ୟ ସୁକୁମାରଅଙ୍ଗୀ
ମୋହ-ତେଜୋଭଃ-ଦ୍ରୁମବନ୍ଦ ବ୍ୟାଜେ;ଉଦେ ହେଲେ
ଦିନମଣି, ବ୍ରହ୍ମଦର୍ଶୀ ସପ୍ତର୍ଷି ମଣ୍ଡଳୀ
ସମାପି ମାନସ ସ୍ନାନ, ଟୋଲ ସ୍ୱର୍ଣ୍ଣପଦ୍
କରନ୍ତି ଯେ ବ୍ରହ୍ମପୂଜା, ପ୍ରାତ୍ୟହିକ କୃତ୍ୟ ।
ହିରଣ୍ମୟ-କର-ହାର ଫେଇ କଣ୍ଠୁ ରବି,
ଦେଲେ ସ୍ନେହେ ବଲମ୍ବାଇ ଧରଣୀବକ୍ଷରେ,
ସେ ଶୋଭା ରଙ୍ଗାଇଦେଲା ସୁବର୍ଣ୍ଣ ରଙ୍ଗରେ
ଦର୍ଶକଚକ୍ଷୁଷା, ଜଡ ପ୍ରାଣମୟୀ ତାକୁ ।
ଢର ଶୋଡଶିଷ୍ୟାଶ୍ରୌଣୀ ଗାଇଲା ଯଗନେ
ଏବା ଅନ୍ତର୍ବେଦନାର କରୁଣ ସଙ୍ଗୀତ
ଅତୁଳ ଉଦାସ ସ୍ୱରେ, ଅଶ୍ରୁପ୍ଲାନ ଶୋକେ,
ସେ ଅନନ୍ତ ଆର୍ତ୍ତନାଦେ ବ୍ୟଥିତ ପ୍ରାଣର
ଯେ ସଂକ୍ଷିପ୍ତ ଇତିହାସ କଲା ପଦବ୍ୟକ୍ତ
ତାହା ଅରେ, ଏ ଅମ୍ଭାଗେ, କେ ବୁଝିବ ତାହା,
କାହିଁ ହାସ୍ୟ ନେତ୍ରେ ଅଶ୍ରୁ, ଅସିବ ବା କାହିଁ;

## ତୃତୀୟ ସର୍ଗ ।

ମହା ଦୁଃଖେ ଯାଉଛନ୍ତି ତା ବସି ସନ ହୋଇ,
ଅଶ୍ରୁଶୂନ୍ୟ ଶୋକ ବଡ଼ ଅସହ୍ୟ, କଠୋର,
ଶୋକ ନୁହେ—ମୂର୍ତ୍ତିମନ୍ତ ଯମଦୂତ ତାହା ।
ବନ ମଧ୍ୟେ ଲୁଚକାଲି ଖେଳ ଶତମାଳ
କଲ୍ଲ ଗିରି ପ୍ରଦକ୍ଷିଣ, ଧୂମାକାରେ ଜଡ଼,
ଜରତ ପର୍ବତଶିରେ କି ସେ ପକ୍ୱ କେଶ,
କିମ୍ବା ଧୂମ୍ରନଦୀ ବହେ ଧୂମ୍ରସ୍ରୋତେ ପୂରି ।
ଶେଷେ କ୍ଷୁଦ୍ର ମୂର୍ତ୍ତି ଧରି ରହିଲା ଶିଖରେ,
ଦେଖି ତାହା ପ୍ରତେ ହେଲା ମାନବେ ଏସନ,
ଚପୁଛନ୍ତି ବାମନ ବା ବଳଙ୍କ ପାତାଳେ !
ଦିବାଲୋକେ ସ୍ୱଚ୍ଛବପୁ ଦିଶିଲା ସୁସ୍ପଷ୍ଟ,
ଅହୋ, କି ନିବିଡ଼ ବନ, ଗମ୍ଭୀର ଶ୍ୟାମଳ,
ଭୀମକାନ୍ତ, ଶାନ୍ତଦେବୀ ଧ୍ୟାନମଗ୍ନା ତହିଁ,
ମୁଚକୁନ୍ଦ, ଦକ୍ଷାରକ, ଧଠା, ମେରୁଶୃଙ୍ଗା,
ସୁନାରି, ଛଦ୍ରୁକ, ଅମ୍ବ, ସଲପ, ତମାଳ,
କୁଟଜ, କରଞ୍ଜ, ଧବ୍ବ, ନଙ୍ଗୀ (୧), କଣୀଧାରି (୨)
ଭର୍ମିଳା, ଝାଙ୍କଣୀରମ୍ଭା, ଶିଆଳି, ପିପ୍ପଳୀ,

---

(୧) ଏକପ୍ରକାର ବୃକ୍ଷ । ଏହି ବୃକ୍ଷର କାଠ ତେଲରେ ଜଳାଇ ଦିଅ କଲେ ତେଲର ସ୍ୱାଦବଦ ଗନ୍ଧ ନଷ୍ଟ ହୁଏ ।

(୨) ବୃକ୍ଷବିଶେଷ । ଏହାର ଫଳ ବର୍ଣ୍ଣିଆନ୍ତୁ ।

## ମହେନ୍ଦ୍ର ।

ଟିହସ୍କୃକଙ୍କ, ମାଣ, କୁରୁବକ ଅଦ
ତରୁ ଲତା ଗୁଳ୍ମଜାଳେ ହୋଇ ଗୂଢାଗୂଢ
ରୋଧୁଅଛି ଦୃଷ୍ଟିରେଖା, ଆଉ·ଅନ କଥା,
ନ ପାଇ ନିର୍ଗମ ପଥ ସମୀରଣ ତହିଁ
ଘୂରବୁଲେ ଇତସ୍ତତଃ ସନସନ ସ୍ୱନେ,
ଘୂରବୁଲେ ମଶା ଯଥା ମଶାର ମଧ୍ୟରେ
ଘୁଣ୍ ଘୁଣ୍ ସ୍ୱରେ, ଖଟେ ଜୀବନ ବ୍ୟାକୁଳେ ।
ଗିରିରାଜ ମହେନ୍ଦ୍ରର ରାଜଧାନୀ କି ସେ,
ନିର୍ଝର ସାଦବ୍ୟ କରେ ଝର୍ଝର ନିନାଦେ,
ଶ୍ୱାପଦ ପିଅର୍ଦା ତହିଁ, ସ୍ୱଚ୍ଛବେ ସେ ଶଜ,
ପୀଡ଼େ ଯେଣୁ ହରିଣାଦ ନିରୀହ ପ୍ରଜାଙ୍କୁ
ବିନା ଦୋଷେ, ଯନେ ତାଙ୍କୁ କ୍ଷମାମୟ ଗିରି,
ମାତ୍ର ନ କ୍ଷମନ୍ତି କେବେ ଗିରି-ଅଧିକାରୀ
ଗିରିବାସ ରାଜମଣି, ବୀର ଜଗଜ୍ଜେଠୀ;
ଅମୋଘ ତାଙ୍କର ଲକ୍ଷ୍ୟ, ଅର୍ପନ୍ତି ସେ ଦଣ୍ଡ,
ନ୍ୟାୟାନ୍ୟାୟ-ଭେଦଶୂନ୍ୟ ଯମର ସ୍ୱଭାବ,
ମାତ୍ର ନୁହେ ଧର୍ମର ସେ ଧାର, ଧର ସେହୁ
ନ୍ୟାୟ-ଜନ୍ତି, ଅର୍ପେ ଯୋଗ୍ୟଶାସ୍ତି ଦୋଷୀ ପ୍ରତି ।

ବାହାଦୂର ସସୁସ୍ଥ କେ ବାନନ ଭ୍ରମଣେ,

ତୃତୀୟ ସର୍ଗ ।

ପାଳଗୁମ୍ଫା (୧) ଆଗେ ଆଗେ ଦେଖାଇଲା ବାଟ,
ଢୋଲ ବଜାଇବାକୁ ଯାଇ ପୁଲିନ୍ଦ (୨) ଯେସନ
ଦେଖି ଆସେ ରଥଯାତ୍ରା, ଦେଖିଲୁ ତେସନ
ମହାଦୃଶ୍ୟ—ସ୍ୱର୍ଣ୍ଣମୁଦ୍ରା ବଦନ ନର୍ତ୍ତନ ।
ଶିଳାସ୍ତୂପ ରନ୍ଧ୍ରୁ ଝର ବହୁ ଜଳଧାର
ଆସୁଅଛୁ କ୍ରମନମ୍ର ସୋପାନେ ଓହ୍ଲାଇ
ମଧୁର ଭୈରବ ରବେ, ବହୁଛୁ କି ଅହା
ଧୂର୍ଜଟୀ ଜଟିଳ ଜଟା ଭେଦ ଭଗୀରଥୀ
ସହସ୍ର ପ୍ରବାହେ, ବେଗେ ଭୂଜଗଗହ୍ୱରେ ।
ସ୍ୱଚ୍ଛ ଶୁଭ୍ର ଜଳ ଯଥା ତରଳ ହୀରକ
ଅଖଣ୍ଡ ସଲିଳ ଭେଦ ଦଶେ ଜଳଜଳ
ନିମ୍ନସ୍ଥ ଶୁକ୍ତିକା, ଶଙ୍ଖ, ଲୋହିତ କର୍କଟ,
ଶେତ୍ରଚକ୍ର କ୍ଷୁଦ୍ର ମୀନେ ଧୀରେ ସନ୍ତରେ—
କେହି ଶୁକ୍ଳ କେହି କୃଷ୍ଣ କେହି ବା ଲୋହିତ,
ଚଞ୍ଚଳ ଚାହନେ ନାହିଁ ଭ୍ରାନ୍ତି କି ଭ୍ରୂକ୍ଷେପ,
ନିର୍ଜନ ଅଗମ୍ୟ ସ୍ଥଳୀ, ଆସନ୍ତି ଏଠାରେ
ମାନବ ପ୍ରଭାବ, ତେଣୁ ଏ ଗରିମା ସିନା ।
ଅଗାଢ଼ ବ୍ୟାକୁଳ ନେତ୍ରେ ଦେଖ ସେ ମାଧୁରୀ

(୧) ଖଣ୍ଡଗିରି ଉପର ଜୈନିକ ଗୁମ୍ଫା । ଗୁମ୍ଫା ସମ୍ଭବତଃ ଗୁମ୍ଫା ଶବ୍ଦ ।
(୨) ଶବର ।

ତଳ ଜନ୍ମେ ଗତ ମୁହିଁ ଜନ୍ମଗା ସହରେ
ଲୁଷ୍ମୀ ପଦ୍ମେ; ବସିଛୁ ଏ ବେଳ ଘରେ
ଶାନ୍ତବୋଲା ହୃଦହର ସୁଷମା ଦର୍ପଣୀ,
ତାହିଁ କୁଙ୍ଗ ଜହ୍ନୁର ଜଳ ଦୈତ୍ୟପ୍ରାସ୍ଥ,
ଗାଳ ତା ସର୍ଷପୁ କ୍ଷୁଦ୍ର, ଦେଖି ମାତ୍ରେ ହସ,
ଜଗଛ ଏ ହିମାଳୟ ମୂଷିକ ପ୍ରସବ ।
ମଣ୍ଡିଛୁ କୋଟାଲା ଅଙ୍ଗେ ପ୍ରବାଳ ପଲ୍ଲବ,
ଲେଖିଛୁ ବା ଶଶ୍ୱ-ଭବ ଲୋହିତ ଅକ୍ଷରେ
କାନ୍ତ ବନ-ମହାକାବ୍ୟ ଅଳଙ୍କାରମାଳ,
ମାଡ଼ିଛୁ ତମାଳ ଲତା-ଶ୍ୟାମାଙ୍ଗୀ ତର୍ଦ୍ଧିରେ,
ଦେଇଛୁ କି ଯଖ ନାରୀ ଅଗ୍ନିକୁଣ୍ଡେ ଝାସ,
ପ୍ରତପଲ ଖଣ୍ଡପଦ ତରଙ୍ଗିଣୀ ବକ୍ଷେ
ଅଙ୍କୁସେ ଏସନ, ଅହା ତଟିନୀ ସୁନ୍ଦରୀ,
ଶୋଭିଛୁ ବେଣୀରେ ଅବା ମନ୍ଦାର କୁସୁମ ।
ପଡ଼ିଛୁ ବକ୍ଷ୍ୟରୁ ହୋଇ ବେଳେ ଝିଙ୍କପଶ
ମୁକ୍ତାସ୍ତୂପ କୃଷ୍ଣ ଲୌହ ତାଲୁଚୀ ପତ୍ରେ । (୧)
କୁଲ୍ଲଲନ୍ତ ଫଳେ ଦଳେ ପଥର ବଇଁଛ (୨)
ଚନ୍ଦ୍ରକାନ୍ତ, କୃଷ୍ଣବର୍ଣ୍ଣ ପାଷାଣ ପୃଷ୍ଠରେ,

---

(୧) ଅବଃ ଯବର, ଅର୍କକେଶେ ।
(୨). ସ୍ଥଳଚନ୍ଦ୍ର ।

ଫୁଲନ୍ତ ପ୍ରାବୃଟେ ଯଥା ଇନ୍ଦ୍ରଗୋପପୁଞ୍ଜ
ସୁଶ୍ୟାମଳ ଦୂର୍ବାକୀର୍ଣ୍ଣ ପ୍ରଶସ୍ତ ପ୍ରାନ୍ତରେ ।
ଶୋଇଅଛି ଗଡ଼ଖାଇ (୧) ଚାହିଁ ବା ପୁଅଁଳ
ବଶାଳ ପିଅଳ (୨) ତଳେ, ପଶ୍ଚ ପଦ ପ୍ରାନ୍ତେ
ସର୍ପରୂପେ । ଚାହିଁ ଅବା ପଳାଶ ବ୍ରତତି
ମଣ୍ଡି ହୋଇ ଅରୁଜ୍ୟୋତି ବଶେ ଜ୍ୟୋତିର୍ମୟୀ,(୩)
ଖେଳୁଛି କି ବ୍ୟୋମଲତା (୪) ବନଲତା ସହ ?
ନ ଚଳଇ ପଦ ଆଜ, ନ ଚଳଇ ଦୃଷ୍ଟି,
ଅନ୍ଧକାରମୟ ସ୍ଥଳ, ପ୍ରତେ ହୁଏ ଯଥା
ଅରଣ୍ୟର ଅନ୍ତଃପୁର, କିମ୍ବା ସନ୍ଧ୍ୟା ରାଜ୍ୟ ।
ଧାଉଁଛି ତଡ଼ାଗାକାର ଶିଳାରୁଦ୍ଧ ସ୍ରୋତ,
ନିର୍ମଳ ସଲିଳରାଶି, କାକଚକ୍ଷୁ ଯଥା,
ସମ୍ଭାଳି ନ ପାରି ତହିଁ ଉଦ୍‌ବେଳ ଆକାଙ୍କ୍ଷା
ପଡ଼ଇ ଉଛୁଳି, ଯେସନେ ମାତୃକୋଳେ ଶିଶୁ,
ପାଇଲେ ଏକଳ ମାତୃକ୍ରୋଡ଼ ପ୍ରଲୁବ୍ଧର,

---

(୧) ଜଡ଼େଇ ହୋଇ ।
(୨) ପିଆଶାଳ।
(୩) ସ୍ୱଭାବତଃ ବୃନ୍ତରେ ଅରୁଣି ଅଛି । ଅରୁଣୋଦୟରେ ପଳାଶଲତାମାନ ଅଗ୍ନିଲତା ପ୍ରାୟ ଦେଖାଯାଏ ।
(୪) ଅଳୁଡ ।

## ମହେନ୍ଦ୍ର ।

କ୍ଲାନ୍ତିହର, ଶାନ୍ତିକର, ଶୀତଳ, କୋମଳ,
କେ ନ ଇଚ୍ଛେ ଅଙ୍କେଶବେ ହେବାପାଇଁ ଶିଶୁ ?
ଶକଟ ଶବକ୍ତ ବନ, ଭୁଜେ ସେ ଝପାନ (୧)
ଅଦ୍ରି ପଥେ ପଙ୍କପଙ୍କ ପଣ୍ଡ୍ରପଦଚିହ୍ନ,
ମୃଗମ୍ବୀର ଯୋଗସ୍ଥାନ ଜାଣି ମୃଗୟୁ ଏ
ଜଗନ୍ତ ଅଲକ୍ଷେ ଚଢ଼ି ପ୍ରସ୍ତର ଉହାଡ଼େ,
ଧର ହସ୍ତେ ମୃତ୍ୟୁବାଣ—ମୃତ୍ୟୁଉପରୂପୀ ।



(୧) ଜନ୍ତୁମାନଙ୍କ ଚଢ଼ ଡିହଜା ସାଃ ।

# ଚତୁର୍ଥ ସର୍ଗ।



ଛାୟା ପଶି ପାଦତଳେ ପଶିଣ ଶରଣ
ଜଣାଇଲା ମଧ୍ୟାହ୍ନର ଆଗମ ସଙ୍କେତ,
ହେଲ ରୌଦ୍ର ରୁଦ୍ରକାନ୍ତ ଖଣ୍ଡ, ଘୋରତର,
ଡାକଦେଲା ଉର୍ଦ୍ଧ୍ୱେ—"ଜଳପିଇପି" ବୋଲିଣ
ସ୍ୱନାମପ୍ରସିଦ୍ଧ ପକ୍ଷୀ ଉତ୍କଟ କଣ୍ଠରେ। (୧)
ପାଦପୁ ପଲ୍ଲବ ପତ୍ର ଖସାଇ ପବନ
ଉଡ଼ାଇଲା ସୂତ୍ରଶୂନ୍ୟ ଘୁଡ଼ି, ଶିଶୁ ଯଥା
ବାରତା କାଗଜେ ତାର ଉଡ଼ାଏ କୌତୁକେ।
ଝିଙ୍କାରି ନିଃସ୍ୱନ ଘନେ ଶୁଭିଲା ସ୍ୱେଦଗେ,
ଅହା କି ଲଳିତ ସ୍ୱର, ବାଜେ କି ମଧୁରେ
ମଧ୍ୟାହ୍ନ-ନୃପତିଙ୍କର ନର୍ତ୍ତକୀ ନୂପୁର।
ବରଚୁଲା କର ଅଗ୍ନି ଶୋଭୁଛି ଶିଆଳୀ (୨)
ଗାରନାଗ, ଅଷ୍ଟଫଳା-ଫଳେ ବିମଣ୍ଡିତା;

---

(୧) ପକ୍ଷୀବିଶେଷ। ଏହି ପକ୍ଷୀ 'ଚଇଗିରଗି' 'ଚଇଗିରଗି' ବୋଲି ରବ କରେ।

(୨) ମଧ୍ୟାହ୍ନ ସମୟରେ ଶିଆଳୀଲତାରୁ ଶବ୍ଦ ଯୋଡ଼ାଯାଏ। ଏହାର ଫଳ ଅଷ୍ଟର ଫଳା ତୁଲ୍ୟ।

ଏ ସମୟେ ଭଲ ଯାତ୍ରା ସହଯାତ୍ରୀ ସହ
ମିଳିପଥେ, ଶାନ୍ତ ଦୂର ହୋଇ ଅଗ୍ରସର
ହେଲେ ବୃନ୍ଦାବନେ, ରୂଢ଼ ତା ଗହରେ,
ମାଡ଼ୁଛି ମଞ୍ଜୁଳେ କେତେ ବନ୍ୟ କର୍କଟିକା (୧)
ଧରି କୋଳେ ଫୁଲ ଫଳ, ଦେଖି ଫଳ ଭାର
ଝୁରିବ ରସନା, ମାଂସ ବଡ଼ ପିଠା, ଯଥା
ଶତ୍ରୁ ଆଶୀର୍ବାଦ, ରମ୍ଭା ଅଧମ ବନ୍ଦନା ।
"ଗୁରୁଙ୍ଗୀ" ଶବରପଲ୍ଲୀ ଦକ୍ଷିଣ ଅଦୂରେ
ଛଦନ୍ତେ ପଶିଲେ ସର୍ବେ ଗହନ ବିପିନେ,
ଅଗମ ଦୁର୍ଗମ ପଥ, ଦୁର୍ଯ୍ୟେ ଦୁସ୍ତେଦ,
ବେଢ଼ ପାଶେ ଦୃଷ୍ଟିରୋଧୀ ନିବିଡ଼ କାନ୍ତାର,
ନୀରବ, ନିସ୍ତବ୍ଧ, ସବୁ ତାହା ଯୋଗାଶ୍ରମ—
ଜଗତ ଯୋଗିସ୍ଥବସ୍ଥ ନୀରବଭାଙ୍କର ।
ଶୁଭିଲା ଶ୍ରବଣ ଶବ୍ଦ, ଘନେ ହେଲା ଯଥା
ମୃତ୍ୟୁର ନିଷ୍ଠୁର ରୁଦ୍ର ଅଭିଶାପ ବାଣୀ,
ଶୁଣି ସେ ବିକଟ ଶବ୍ଦ ଉଠିଲେ ଚେଇଁ
ଚନ୍ଦ୍ର-ସୂର୍ଯ୍ୟ-ସୁପ୍ତ ବନ୍ଧୁ, ମିଶିଗଲା ତାହା
ଘନ ବଜ୍ରନିର୍ଘୋଷରେ । ହେଲା ଶତ ଗୁଣ
ଶାନ୍ତ କାନନର ଶୀର୍ଣ୍ଣ ଦୁର୍ଭିକ୍ଷ-ଭାର ଶରେ ।

(୧) ବଣକାକୁଡ଼ ।

## ଚତୁର୍ଥ ସର୍ଗ ।

ଭୁଲଲ ଉଲଗ୍ନ ମୂର୍ତ୍ତି ଧର ବସ୍ତ୍ରଖିଡା,
ହେଲ ବୁଦ୍ଧି ଅସାଷ୍ଟମ, ହେଲ ଅସ୍ତହୁତ ।
ଅହା, ପୁଣି ଏ କ ଶୋଭା, ପଳାଇଲ ଦସ୍ୟୁ,
ଯେଉଁ ଶୋଭା ପଦେ ଶୌର୍ଯ୍ୟ ଲୋଟେ ଦାସପଣେ,
ଦସ୍ୟୁ ତ ଶୌର୍ଯ୍ୟକୁ ଡରେ ଜୀବନ ବଦଳେ,
କ ସାହସେ ରହିବ ସେ ସେହି ଶୋଭା ଆଗେ ।
ଯୋଟିଛି ତମାଳଲତା ବନେ ଅନର୍ଯ୍ୟାପ (୧)
ଲୁଷ୍ଟାଦ କୁନ୍ତଳ-(୨) ବଣ, ଶ୍ୟାମାଙ୍ଗୀ ସୁନ୍ଦରୀ,
ଲେଖି ରଖିଅଛି ପତ୍ର ଏ ଅଭିନନ୍ଦନ
ପୂର୍ବରୁ ବସନ୍ତପାଇଁ ଧନ୍ୟା ଏ ବଲ୍ଲରେ ।
ଆଗେ କଳାଦାଗେ କର ଅକ୍ଷର ଚିହ୍ନିତ,
ମଡ଼ାଉଛି ତା ଉପରେ ଦଳିତ ହିଙ୍ଗୁଳ,
ଆସିଲେ ବସନ୍ତ-ନୃପ, ଦେଖିବ ଗ୍ରମୁରେ ।
ସେ ଅଲୂତ ଦେବଲିପି ଅନ୍ୟର ଅପାଠ୍ୟ,
ଯେ ଲେଖିଛି, ତାହାର ସେ ହୃଦୟର ଭାଷା,
ପଠନେ ଭାଜନ ସେହ, ଅବିର ଭାଜନ
ଯା ପାଇଁ ଲେଖିତ ସେହ ବଣ୍ଡ ବତୁସ୍ପଟ ।
ପ୍ରେମଲିପି, ପ୍ରେମଭାଷା ସ୍ୱତନ୍ତ୍ର ଜଗତେ,
ପଠନେ ସକ୍ଷମ ତାହା ପ୍ରେମିକ ପ୍ରେମିକା ।

(୧) ଅସୀମ । (୨) କଡ଼ି ।

## ଶରତ୍‌ ।

ଶସ୍ୟର ଶ୍ୟାମ ହାସ ଦେବଣ ସ୍ୱମନ
ବସି ବୃନ୍ତ-ସିଂହାସନେ ଶଙ୍କୁ (୧) ସ୍କନ୍ଧେ
କରୁଅଛୁ ଆମନ୍ତ୍ରଣ ଅଳକ ସଙ୍କେତେ,
ସଖୀର ଏ ସ୍ୱଚ୍ଛ ଦେହ ସଜନୀ ତାହାର
ଦେଖୁଛୁ ମୁକୁରବତସା, ବାଟେ ଝୁଲି ଝୁଲି;
ସେ ନବୀନ ପରିହାସ ପ୍ରଥମା ବଦନେ
ଦେଉଅଛୁ ବୋଲ ଆହା ଲଜ୍ଜା-ପାଟଳିମା
ରଙ୍ଗ ବର୍ଣ୍ଣରେ, ତହିଁ ଶୋଭା ଦ୍ୱିଗୁଣ ଝଟକେ ।
ଏ ଅନ୍ତେ "ହରିଦ୍ରାସାଟୀ" ଉରୁର ସଙ୍କଳେ
ଗମିଲୁ ହରିଦ୍ରାବର୍ଣ୍ଣେ କ୍ରମଜନ୍ମ ପଥେ,
ହେଲୁ ବାହକଙ୍କ ଗଣ ତ୍ରୈଗୁଣ ଚଞ୍ଚଳ,
ପ୍ରଭେ ହେଲୁ ତରୁସ୍କନ୍ଧ ଗଳଶୀଳ ପ୍ରାୟ,
ଦେଖାଉଛୁ ତଏ ଯେଷ୍ଟେ ବାୟସ୍କୋପ କ୍ରୀଡ଼ା
( ନବଯୁଗ-ଆଭାବତ ଅଭୂତ କୁହୁକ )
ଶେଷ ଅଗେ-ବେଳେ ବୃନ୍ତୁ ଗଲୁ ଖରେ ଖସି ।
ଊର୍ଦ୍ଧ୍ୱ ବୃନ୍ତା ମଧ୍ୟଦେଶ ଅବରନ୍ତୁ ଘନ,
କଙ୍କର ରକ୍ତନା ଅବା ରୂପାଳସାରୁଣା—
ତାଳନ-କମଳା ଅଙ୍ଗେ, ଅଥବା ବେଷ୍ଟିତ
ସ୍ୱଚ୍ଛ ବସ୍ତ୍ରବାସ—ଗିନ୍ନି-ବୈଷ୍ଣବ କଣ୍ଠରେ ।

---

(୧) ଶୂଳ ଖଣ୍ଡା ।

## ଚତୁର୍ଥ ସର୍ଗ ।

ତେବେ ଦୂରାନ୍ତରେ ପୂର୍ଣ୍ଣ ହେଲା ବୁଢ଼ୀସାହି
ଦୁର୍ଗମ, ଦୁର୍ଲଙ୍ଘ୍ୟ; ଅଛି ପ୍ରାଚୀନ ପ୍ରବାଦ—
ବୁଢ଼ା ଶବରୁଣୀ ଏକ ଛଡ଼ୁ ଛଡ଼ୁ ଏଥି
ଛାଡ଼ିଗଲା ଅଣ୍ଡା ଚାରି, ହେଲା ସେ ଗତାୟୁ,
ସେହୁ ଦିନୁ ବୁଢ଼ୀ ମୂର୍ତ୍ତି ଧରି ଏ ବକ୍ଷରେ
ବହୁଅଛି ବୁଢ଼ୀସାହି ଅଶ୍ୟାମ ଅରଣ୍ୟ;
ଶଶେ ନାଶି ଶଣୀ ଯଥା ହେଲା ଶଶଧର ।
ଏଣିକି ବାଦଲସ୍ତୂପ, ବସିଥାଏ ସଦା
ବାଦଲ ସମିତି, ନାଦ ଛଳେ ବେଳେ ବେଳେ
ହେଉଥାଏ ସମର୍ଥିତ ଅଗତ ପ୍ରସ୍ତାବ ।
ଅସିଲା ଅବର ଦିନ ଦେଖୁଁ ଦେଖୁଁ ଦୃଷ୍ଟି,
ହେଲା ଶୀତ, ଥରିଗଲା ଦେହ, ସ୍ୱସ୍ୱ ସ୍ୱର
ଶୁଭିଲା ସୁଦୂରେ, କ୍ରମେ ସେ ଶବ୍ଦଲହରୀ
ଅସିଲା ସନ୍ନିରେ ଧାଇଁ ଭେଦି ବନସ୍ଥଳ,
ବାଜିଲା କି ଏକାବେଳେ ଶତ ଗ୍ରାମଫୋନ,
ବୈଜ୍ଞାନିକ ଗାନଯନ୍ତ୍ର—ଗାନ୍ଧୁକ-ପ୍ରଭୃତି ।
ମିଶିଲା ତା ସଙ୍ଗେ ପର୍ଣ୍ଣ-ମର୍ମର-ଝଙ୍କାର,
ଛଟିଲା ସେ ସ୍ଥାନ ହୋଇ ଅତିବ ମୁଖର,
ଯେସନ ପଣ୍ଡିତ ସଭା, କିମ୍ବା ପାଠଶାଳା ।
ହେଲା ବୃଷ୍ଟି ଅବୃଷ୍ଟିରେ, ନ ପଡ଼ିଲା ଦେହେ,

କେବଳ ସମ୍ଭୃତ ହେଲା ପତ୍ରେ ଜଳକଣା,
କାନ୍ଦଲେ କି ବୃକ୍ଷେ, ଝରେ ପତ୍ର-ନେତ୍ର ନୀର ।
ଅହୋ, କି ଅଦ୍ଭୁତ, କହୁଁ କହୁଁ ଆସି କାହୁଁ
ଅଭ୍ର ଖଣ୍ଡ, ଦେଲା ପୋଛି ସେ ଲୋତକବିନ୍ଦୁ;
ପୋଛିଦିଏ ଆଶା ଯଥା ଦୁଃଖୀ ନେତ୍ର ଅଶ୍ରୁ ।
ସେହିକ୍ଷଣି ବର୍ଷା, ଶୀତ, ସେହିକ୍ଷଣି ଖରା,
ଛଅ ଋତୁ ଭୋଗ ତହିଁ ଏକଇ ମୁହୂର୍ତ୍ତେ ।
ଦେଖି ଦେଖି ନାନାଦୃଶ୍ୟ ହେଲୁଁ ଅଗ୍ରସର,
ପଡ଼ିଲା ଧୂଳିଆ ବାଟୀ ଧୂଳି-ଧୂସରିତ,
ବାୟୁର ପ୍ରବାହ ତହିଁ ଦାରୁଣ ଭଙ୍ଗୀରେ
କରିଦେଲା ଯାତ୍ରୀକୁଳେ ଧୂଳି-ଜଳେ ସ୍ନାନ ।
ମହେନ୍ଦ୍ର ପରମଯୋଗୀ, ଅଦ୍ଭୁତ-ଅଦ୍ଭୁତ
ଭାବ, ଅବା ସେହି ଶିକ୍ଷା ଦେଲା ଅଯାଚିତେ ।
ସହସା ଉଠିଲା ଅହ ମହା ଅରଣ୍ୟାଗ୍ନି
କ୍ଷିପ୍ତ ମହିଷକୁଳର ରୁଦ୍ର ଉପଦ୍ରବେ,
ଧାଇଁଲେ ସେ ଦୁର୍ଦର୍ପରେ ଗର୍ଜି ଇତସ୍ତତଃ
ଲକ୍ଷ୍ୟହୀନ ଧୂମକେତୁ ପ୍ରାୟ, ଧାଇଁ ଧାଇଁ
କେତେବା ପଡ଼ିଲା ଛିନ୍ନ ଲତାଜାଲ ପାଶେ,
ପଡ଼ିଲା କାବୁଡ଼ କେହୁ ଝୁଣ୍ଟି ଗର୍ତ୍ତୋପରେ,
ସ୍ଥାନମିଶା ଶାର ବସ ହେଲା ଅଦ୍ଭୁତ ।



ଗୋକର୍ଣ୍ଣେଶ୍ୱର ଦେବାଳୟ । (୪୪   ୪୫ ପୃ.)

ଏଥିଅନ୍ତେ ବିଶ୍ରାମିଲ୍ଁ ପଞ୍ଚମ ଦିଶରେ,
ନବସନ୍ତ ଏଥି ଦିବ୍ୟ ନିଷ୍କଳ ଦେଉଳେ
ଗୋକର୍ଣ୍ଣ-ଈଶ୍ୱର ଶିବ, ବନ୍ଦି ପାର୍ଥ ସ୍ମରି । (୧)
ସ୍ମରି ସେ ଦେଉଳଗାତ୍ର ଅଙ୍କିତ ଯୁଗର
ଅତ୍ୟାଚାର—କଳାଦ୍ରୋହୀ କଳାପାହାଡର,
ବର୍ଣ୍ଣାନ୍ତି ଅଦୃଷ୍ଟର କରୁଣ କାହାଣୀ
ନିର୍ବାକ ବାଣୀରେ, ଛେଦେ ଯାଉ ନାହିଁ ବ୍ୟଥା ।
ବୀରତ୍ୱର ଇତିହାସେ ଯାଙ୍କ ପୁଣ୍ୟ ନାମ
ସମୁଜ୍ଜ୍ୱଳ ସ୍ୱର୍ଣ୍ଣାକ୍ଷରେ ସର୍ବାଗ୍ରେ ଅଙ୍କିତ,
ସେହି ମହାମହେଷ୍ୱାସ ପାର୍ଥ ପୃଥ୍ୱୀଜୟୀ,
ଗଣ୍ଡୀ ଭ୍ରମେ ଏ କାନ୍ତାରେ ବଧି ଗୋରୁ ଏକ
ଯାଉଁ ଯାଉଁ ଧନୁହୂଲେ ବହି ତାର ଶବ
ସାଗରେ ନିକ୍ଷେପ ଅର୍ଥେ, ପଡ଼ିଲା ଏଠାରେ
ଛିଡ଼ି କର୍ଣ୍ଣ, ତହୁଁ ଧନଞ୍ଜୟ ସ୍ଥାପି ଏଥି
ଗୋକର୍ଣ୍ଣ-ଈଶ୍ୱର ଶିବେ, ଅନନ୍ତ ସନ୍ତାପୀ,
ବହିଲେ ଅଜ୍ଞାନକୃତ ପାପ ପ୍ରାୟଶ୍ଚିତ୍ତ ।
ପଡ଼ିଲା ଶବର ପୁଚ୍ଛି, ପଡ଼ିଲା ଆବର
କୋଟି କୋଟି ରକ୍ତବିନ୍ଦୁ ବାରୁଆଁ ଗ୍ରାମରେ,
ବେଳ ନାମେ ସଂସ୍ଥାପିତ ଶିବ ବେଳ ସ୍ଥାନେ

(୧) ମହାଦେବଙ୍କର ଆକାର ଗୋକର୍ଣ୍ଣ ସଦୃଶ ।

ଯଥାକ୍ରମେ ପୁଷ୍ପେଶ୍ୱର, କୋଟିଲିଙ୍ଗେଶ୍ୱର ।
ଫୁଟିଛି ଅଙ୍କିତ ଫୁଲ ଦେଉଳ ଦ୍ୱୈପାଶେ,
ପଡ଼ୁଛି ଝଲୁଡ଼ି ଛଟା ପୁଣ୍ୟ ପବିତ୍ରତା !
ମଧ୍ୟେ ବିରାଜିତ ଶମ୍ଭୁ, ଦେଉଳ ଭିତ୍ତିରେ
ନିବସନ୍ତି ତାହାଙ୍କର ପୁତ୍ର ପରିବାର,
ଦ୍ୱାରଦେଶେ ଲମ୍ବୋଦର ନବଗ୍ରହ ମୂର୍ତ୍ତି,
ସମ୍ମୁଖେ ବିଶାଳକାୟ ବାସୁଏ ବଳଦ
ରହିଛି ଜାନୁଏ ଉଭ ଅଙ୍ଗ ପ୍ରଣିପାତରେ ।
ପ୍ରବେଶିଲେ ଭଗ୍ନକାୟ କୁନ୍ତୀ ଦେବାଳୟ
ଜଡ଼ାଇ ଶୈବାଳଗୁଚ୍ଛ—ପଳିତ କୁନ୍ତଳ,
ସ୍ଖଳିତ ଖଣ୍ଡିତ ଦନ୍ତ ଦେଖାଇ ଅଧର
ପ୍ରଦାନୁଛି ପାନ୍ଥେ ଶୀଘ୍ର ବାର୍ଦ୍ଧକ୍ୟ ସୂଚନା ।
ଏ ସଜଳ କୁନ୍ତୀମୂର୍ତ୍ତି, ଚିତ୍ତୋଜ୍ଜ୍ୱଳ ତାହା
ମାତୃତ୍ୱର—ଦେବୀତ୍ୱର ମହିମା-ମୟୂଖେ,
ଅଧରେ କରୁଣ ହାସ୍ୟ ହୋଇଛି ମୂର୍ଚ୍ଛିତ ।
କର୍ମୀର ନୈପୁଣ୍ୟ, ପୂର୍ଣ୍ଣ ଭାବବ୍ୟଞ୍ଜନାରେ
ଦେଖାଇଛି କଲାକର (୧) ଅଦ୍ଭୁତ କଳ୍ପନା ।
କାହିଁ ସେହେ ଭକ୍ତମତା ନୁହେ ତା ପ୍ରତିମା,
ସ୍ୱାଭାବିକ ମାନବ ସେ, ତାହାରି ଅନୁଧ୍ୟାନେ

---

(୧) ଶିଳ୍ପୀ ।

ଯାଇଅଛୁ କ୍ଷଣପୂର୍ବେ ପାଷାଣ ପାଇଁ ।
କୁନ୍ତୀ ବାମେ ବିଷ୍ଣୁମୂର୍ତ୍ତି, ଭକ୍ତିପ୍ରୀତିଶ୍ରେୟସ
ଶ୍ରୀମଦ୍ଦେବ, ନାରାୟଣ ଗିରି ଅଧିଷ୍ଠାତା;
ଶଙ୍ଖ, ଚକ୍ର, ଗଦା, ପଦ୍ମ ଶୋଭେ ଚତୁଷ୍କରେ;
ଯୋଡ଼ହସ୍ତେ ଧ୍ୟାନମଗ୍ନ ସମ୍ମୁଖେ ସୁପର୍ଣ୍ଣ । (୧)
ପାଷାଣ ଦେହଲୀ ଦେହେ ଲତା ଫୁଲ, ପକ୍ଷୀ
ମୂର୍ତ୍ତିରେ ଖୋଦିତ ପ୍ରାୟ ଦଶେ ପୁଷ୍କରମ,
ଅବହେଳ ରଚି ଶିଳ୍ପୀ, କରଛୁ ନିର୍ଜୀବ,
କିନ୍ତୁ ସେହି ନିର୍ଜୀବତା ପ୍ରଦାନନ୍ତୁ ତାଙ୍କୁ
ଅନନ୍ତ ଅକ୍ଷୟ ନିତ୍ୟ ଜାଗ୍ରତ ଜୀବନ ।
ଅଦୂରେ ଯାବନ (୨) ପାର୍ଶ୍ୱେ ଭଗ୍ନ ମୂର୍ତ୍ତିସ୍ତୂପ,
ହାୟ, କାଳ ଖଣ୍ଡେ ଖଣ୍ଡେ ଭଙ୍ଗି ମୂର୍ତ୍ତିପୁଞ୍ଜ
ଯାଇଅଛୁ ଅବଶିଷ୍ଟ ଭବିଷ୍ୟ ସକାଶେ ।
ଅଛୁ ଶିଳ୍ପ, କାହାନ୍ତି ସେ ଶିଳ୍ପୀ, ଯତ୍ନବଳେ
ଶିଳ୍ପେ ଏହା, ଦେବେ ସେଙ୍କୁ ମାରଜିବ ଉତ୍ତର—
କାହିଁ ସେ ସୁକାଳ, ଗୁଣ-ଗରିମା-ପ୍ରଦାତ୍ର !
କୁନ୍ତୀବାମେ ସୁନ୍ଦା ଦେଉଳ ଇତିହାସ ସ୍ମୃତ,
କୁରୁକ୍ଷେତ୍ର ଯୁଦ୍ଧ, ମହାଭାରତ ଆଖ୍ୟାନ,
ସକଳର କେନ୍ଦ୍ରୀଭୂତ ମହାଶକ୍ତି କୁନ୍ତୀ ।

---

(୧) ଗରୁଡ଼ । (୨) ବନ୍ଦାଦ୍ ।

ତାଙ୍କ ପଦ ଭାଗ୍ୟବନ୍ତ ସୁବୀର-ପ୍ରସୂତ
ଦୁର୍ଲଭ ଭାରତେ ଏବେ ଦୁର୍ଲଭ ଜଗତେ ।
କୁନ୍ତୀସ୍ଥାନେ ପୂତା ଏହି କ୍ଷୁଦ୍ର ଚମ୍ପାଝର, (କ)
ବରଣୀୟ ଘର୍ଟ, ପ୍ରତି ପୃଷନ୍ତରେ ତାର (୧)
ମିଶିଅଛି କୁନ୍ତୀଦେବୀ ଶିବ ଆଶୀର୍ବାଦ ।
ଦେଖୁଁ ଦେଖୁଁ ଏହି ଦୃଶ୍ୟ ପଡ଼ିଲେଣି ଗଢ଼ି
କେତେବେଳୁ ଶୈଳବକ୍ଷ ମହେନ୍ଦ୍ର ଶିଖରୁ,
ନ ପାରିଲି ଜାଣି ତାହା, ଧବଳ ଚଞ୍ଚଳ,
ଗଡ଼ିଯାଏ ଅଲକ୍ଷ୍ୟରେ କର ଅୟୁ ଯାନ,
ବିଷୟ-ବ୍ୟାପୃତ ନର ନ ପାରେ ତା ଜାଣି ।
ଛୁଟିଗଲା ଦୃଶ୍ୟନଶା, ଭାଙ୍ଗିଗଲା ଲୟ,
ଊର୍ଦ୍ଧ୍ୱ ସାନୁ ଅଧମୁଖେ ଢଳି ଚହୁଁ ଗଲି,
ଝିହିବାରୁ ଅଟୁଣ୍ଡା ରଣ ବେଳ ଥାଉଁ ଥାଉଁ,
ପ୍ରତେ ହେଲା ଭାଙ୍ଗିଲାଣି ଢାଙ୍କିଲା ପର୍ବତେ ।
ନାହିଁ ଆଉ ଅରଣ୍ୟାନୀ, ଏଣିକି ହୃଦୟ,
ମହାପ୍ରସ୍ଥାନ ଗିରି, ବିଦ୍ୟୋଧର୍ମେ ଅବା
ଯାଉଛି ଉପୁଡ଼ି ତାର ଶିରୁ କେଶରାଶି ।
ମାଡ଼ ଚହିଁ ଦଣ୍ଡ ନାହିଁ ଗିରି ଅସ୍ଥିତର,

---

(କ) ସୋହିଏ ଚମ୍ପାଙ୍କ ମୂଳରୁ ଏହି ଝରଣା ପ୍ରବାହିତ ।
(୧) ଜଳକଣା ।

## ଚତୁର୍ଥ ସର୍ଗ ।

ସ୍ତବ୍ଧୀତ ସେ ଶୋଭାବନ, ନ ଥାଏ ପଲ୍ଲବେ
ସେ ଶୋଭରେ ପ୍ରାଣମୟୀ ଘନ୍ତ ଚାରୁଲତା,
ମାଣ୍ଡ ନୁହେ କୋମଳତା—ଶୀତଳତାଶୂନ୍ୟ ।
ମୂର୍ଚ୍ଛ ସଂସ୍ମରଣ ତାହା ସୁଷମା ରାଜ୍ୟର ।
ପଥ ବେଢ ପାର୍ଶ୍ୱେ କେତେ ସୁନ୍ଦରୀ ଅଏଁଳା (୧)
ଧରି କରେ ସୁମଞ୍ଜୁଳ ପଦ୍ମରାଗମାଳା
ହୋଇଅଛନ୍ତି ଭଗ୍ନ, ବହୁ ଭଲ୍ଲୁକ ଅବାତ୍ମା,
ଅପିଲେ ତାହାର ପ୍ରିୟ ଅର୍ପିବ ତା କଣ୍ଠେ ।
ହୋଇ ଦର ଛନ୍ନାଛନ୍ନ କାହିଁ ଭୂତବୈଶ (୨)
ଅନଳକୁମାରୀ (୩) ସହ, ରତ ନୃତ୍ୟାମୋଦେ
ଦେଖାଇଣ ଅଙ୍ଗ ଭଙ୍ଗୀ ସମୀର ହିଲ୍ଲୋଳେ ।
ଜାଙ୍ଗଳ ହରଡ଼ଡାଳେ (୪) ବସି କୁତୂହଳେ
ଖେଳୁଛନ୍ତି ଦୋଳି କେତେ କ୍ଷୁଦ୍ର ବାନ୍ଦ୍ରାଦଳ ।
କାହିଁ ବା କୁମ୍ଭିଗର୍ଜ୍ଜୁ ମୁକ୍ତକେଶୀ ବେଶେ
ସାଧୁଛନ୍ତି ଗଭୀର ଯୋଗ ତନ୍ମୟ, ମାନସେ ।
ଉଡ଼ୁଅଛି ଗ୍ରାମବାଇ (୫) କାହିଁ ଫରଫର

---

(୧) ଲବଙ୍ଗର ଧାତ୍ରୀ ଅଏଁଳା । (୨) ବୃକ୍ଷବିଶେଷ ।
(୩) ବୃଷଶୋଭାଗଛ । (୪) ବଣ ହରଡ଼ ।
(୫) ଏକଜାତୀୟ ଲମ୍ବାକାର ପକ୍ଷୀ । ଭୂତ ପ୍ରେତର ଉପଦ୍ରବରୁ ରକ୍ଷା ପାଇବା ସକାଶେ ଶବରମାନେ ଏହାକୁ କଣ୍ଠରେ ଧାରଣ କରନ୍ତି । ଏହା ମହାଭୀର ସ୍ୱମସ୍ତକର ବାଳ ବୋଲି ସେମାନଙ୍କର ବିଶ୍ୱାସ ।

## ମହେନ୍ଦ୍ର ।

ଚିହ୍ନବୃନ୍ଦା ଦାନ୍ତେ, ଶୈଳ ଉଷ୍ଣୀଷ ପର୍ଯ୍ୟନ୍ତେ ।
ବିସ୍ତୀର୍ଣ୍ଣ ପ୍ରାନ୍ତର ପ୍ରାନ୍ତେ ମନ୍ଦର ମାହାତ୍ମ୍ୟ,
ଭଗ୍ନ ହୋଇଛନ୍ତି ତହିଁ ବସ୍ତର ମନ୍ଦର,
କେହ ଭଗ୍ନ, କେହ ସୁପ୍ତ, ସବସ୍ତ୍ର, ନିବସ୍ତ୍ର,
ନରତ ସ୍ୱେମନ୍ତେ ସର୍ବେ, ବସିଛନ୍ତି ଯେତେ
ପଡ଼ିଛି ବିସ୍ତୃତ ଭଗ୍ନ ଖଣ୍ଡୋପଲସଙ୍ଗ ।
ତ ଉଦ୍‌ଭ୍ରାନ୍ତ କଟୁ ଦୃଷ୍ଟି, ନର୍କେ ସ୍ଥିତ, ଶବା
ଅପରେ ଦେଖାନ୍ତି ଦନ୍ତ, କମ୍ପା ଏ ଭଦ୍ରସ୍ତ
ତହିଁ ଦୁଏ ସମ୍ବାଦତ, ଜାଣେ ତା ଦର୍ଶକ ।
ବସିଛି ବପର୍ଣ୍ଣ ବାଡ଼ି ଅଗ୍ନିରନନ୍ଦନ (୧)
ଦଧି ଦୁଗ୍ଧ ନବନୀତ ଅମିକ୍ଷା (୨) ପ୍ରଭୃତି ।
ପ୍ରତ୍ୟକ୍ଷେ ଏ ଜୀବଜାତ, ମାତ୍ର ପରୋକ୍ଷରେ
ମହେନ୍ଦ୍ରର ଅନ୍ତଃପାର, କେତେ ଯେବେ ଗିରି
ଯୋଗାଏ ଆହାର ଜୀବେ, କାହିଁ ତା ସମାଦ !
ହିମସାଗରସଂଖ୍ୟ ସର ବସ୍ତକେ ଅଦୂରେ,
ଯଥା ଶୈଳ କପାଳୀର କପାଳ-ନୟନ ।
ଅଥବା ଏ କେଳ ସର ଗିରିଦର୍ପଣର,
କେଳ କାଳେ ଧୌତ ହୋଇ ଗିରିସୁଣୀଙ୍କର
କସ୍ତୁରୀ-ଅଙ୍କିତ-ଗଣ୍ଡ-ପତ୍ରାବଳୀ ତତ,

---

(୧) ଗୋଖାଲ ବାଳକ । (୨) ଛେନା ।



ମହେନ୍ଦ୍ର-ଆଶ୍ରମ । (୫୦—୫୧ ପୃ.)

ମିଶେ ଏହା ଜଳେ, ଏଣୁ ଦିଶେ ତାହା ନୀଳ ।
ଶୃଙ୍ଗେ ଦୂର ଉଠି ଉତ୍ତୁଙ୍ଗ ସାନ୍ଧ୍ୟାଭ୍ର ସମସ୍ତେ
ମିଳଇ ସଦଳେ ଯାଇ ଷଷ୍ଠ ସାନୁଶିରେ;
ଜନମ, ଜୀବନ, ଆଶା ଉନନ୍ଦେଁ ମୋହର
ଏତେ ଦିନେ ଉପସ୍ଥିତ ସାଫଲ୍ୟ ସ୍ୱର୍ଗର
ସ୍ୱର୍ଣ୍ଣମୟ ସିଂହଦ୍ୱାରେ, ଭାଗ୍ୟ ଆଶୀର୍ବାଦେ ।
ରାଜକୀୟ ପାନ୍ଥଶାଳା ଅବସ୍ଥିତ ଏଥି
ସୁଧାଧବଳିତ ଦେହେ, ଶୋଭେ ସେ ଯେସନ
ମହେନ୍ଦ୍ର ବକ୍ଷରେ ଶୁଭ୍ର-ହୀରକ-ପଦକ !
ଯାହା ଆଜ ସେ ଗୃହର ପ୍ରଚଳିତ ନାମ,
ମାନ ମୁଁ ଅର୍ପିଲି ଆଖ୍ୟା "ମହେନ୍ଦ୍ର ଆଶ୍ରମ" । (୧)
ହେଲା ରାତି, ସୃଷ୍ଟି ହେଲା ଅନ୍ଧାରେ ପ୍ରଳୟ,
ସେ ଆଶ୍ରମଗର୍ଭେ ସର୍ବେ ଲଭିଲୁଁ ଆଶ୍ରୟ ।



(୧) ମହେନ୍ଦ୍ରର ଷଷ୍ଠ ଚୂଡ଼ା ଉପରେ ମଞ୍ଜୁଷା ରାଜାମହୋଦୟଙ୍କର ଗୋଟିଏ ସୁନ୍ଦର ବଙ୍ଗଳା ଅଛି ।

## ପଞ୍ଚମ ସର୍ଗ ।



ରଜନୀରୂପିଣୀ କୃଷ୍ଣା ସର୍ପିଣୀ ଦଂଶନେ
ଖିନ୍ନ ଧରା ଅଚେତନ, ଶଷ୍ପବୈଦ୍ୟ-ରବି
ଚର୍ଚ୍ଚିଲେ ତାକୁ ଯସି କୁଶଳେଁ ତା ଦେହେ
ସଞ୍ଜୀବନୀ-ସୁଧାସିକ୍ତ ସୁବର୍ଣ୍ଣ ଫଳକା ।
ଉଜ୍ଜ୍ୱଳିଲା ସୌରକର, ତୁଷାର ମୌକ୍ତିକେ
ଉଜ୍ଜ୍ୱଳାଏ ଯଥାଁ, ନ୍ୟାଯ୍ୟେ ସତ୍ୟର କିରଣ ।
ଅହୋ, କି ଅନନ୍ତ ଦୃଶ୍ୟ, ଯୋଜ୍ୟ-ସାଦୃଶ୍ୟର
ସୁବିଶାଳ ପାଠାଗାର ବହୁଛ କି ମୁକ୍ତ,
ନିରୂର୍ମି ସୈକତ ସିନ୍ଧୁ ଅଗ୍ରେ, ତହୁଁ ପଛେ
ତରବାଲରୂମ୍ମି ନୀଳ ଉର୍ମିଳ ସାଗର ।
ମହାଦୃଶ୍ୟ କଲ୍‌ବାକୁ ଉଦ୍ଧତଲା ମନ,
ମାତ୍ର ତାହିଁ ନ ପାଇଣ ସ୍ଥଳ କୂଳ କନ୍ଥ
ଅସିଲା ଫେରାଣେ ଫେର ନଦ୍ରୀକ ଉତ୍ତରୁ,
ଯଥା ପୋଷା ପକ୍ଷୀ ଉଠିଯାଇ ପିଞ୍ଜରରୁ
ବାହୁଡ଼େ ସ୍ୱସ୍ଥାନେ ହୋଇ ଶ୍ରାନ୍ତ ବ୍ୟସ୍ତ ।
ଅନନ୍ତ ସ୍ୱବାସରୂମି ଦେଖି ଏବେ ମନ,